# ଉତ୍କଳ
# ଜାତୀୟ ସଙ୍ଗୀତ




ଗାଅ ହେ ସରବେ ଭାରତ ସନ୍ତାନ
ଯତାକାର ଜନ୍ମ ଜାତିର ସମ୍ମାନ ।

ଶ୍ରୀ ବ୍ରଜସୁନ୍ଦର ଦାଶ ।

# ଉତ୍କଳ ଜାତୀୟ ସଙ୍ଗୀତ ।



ଶ୍ରୀ ବ୍ରଜସୁନ୍ଦର ଦାଶଙ୍କ ଦ୍ୱାରା

ସଙ୍କଳିତ

ଓ

ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

# Utkal Jatiya Sangita

Edited and Published

BY

**BRAJA SUNDAR DAS**

Printed by H, K, Das,
Chandrodaya Press,
CUTTACK.
1931.

Price Rs 0-3-6 ମୂଲ୍ୟ ୦ ୦ ୵୬ ମାତ୍ର ।

# ନିବେଦନ ।



ବର୍ତ୍ତମାନ ଆମ୍ଭମାନଙ୍କ ଦେଶରେ ଯେପରି ଅବସ୍ଥା ଉପସ୍ଥିତ ହୋଇଅଛି ତହିଁରେ ଜାତୀୟ-ସଙ୍ଗୀତର ବିଶେଷ ପ୍ରୟୋଜନ, ଏହା କେହି ଅସ୍ୱୀକାର କରିବେ ନାହିଁ । ଇଉରୋପରେ ଯେଉଁମାନେ ସଙ୍ଗୀତ ରଚନା କରି ପରାଧୀନ ଜାତିକୁ ସ୍ୱାଧୀନ କରିଅଛନ୍ତି ସେମାନଙ୍କର ନାମ ଅଦ୍ୟାବଧି ପ୍ରତି ଗୃହେ ଗୃହେ ଧ୍ୱନିତ ହେଉଅଛି । ଭାରତବର୍ଷ ଏହିପରି କବିମାନଙ୍କର ସଙ୍ଗୀତ ନିମନ୍ତେ ରବିବାବୁ, ଡ଼ି, ଏଲ, ରାୟ, କାଜି ନଜୁରଲ, ବଙ୍କିମ ବାବୁ ଓ ବଙ୍ଗଳାର ଅନ୍ୟାନ୍ୟ କବିମାନଙ୍କ ନିକଟରେ ଚିର-ଋଣୀ । ଓଡ଼ିଶାରେ କବି ରାଧାନାଥ, ଭକ୍ତକବି ବାବୁ, ଶ୍ରୀଯୁକ୍ତ କୃଷ୍ଣପ୍ରେମ ହରି ପଟ୍ଟନାୟକ, ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ସୁରଦେଓ, ବାବୁ ଘନଶ୍ୟାମ ମହାନ୍ତି, ଶ୍ରୀ ଗୋଦାବରୀଶ ମିଶ୍ର, ଶ୍ରୀ ଜଗବନ୍ଧୁ ସିଂହ, ଶ୍ରୀ ନୀଳକଣ୍ଠ ଦାଶ, ଶ୍ରୀଯୁକ୍ତ ବାଞ୍ଛାନିଧି ମହାନ୍ତି, ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର, ଶ୍ରୀ ବ୍ରଜସୁନ୍ଦର ଦାସ, ୰ମଧୁବାବୁ, ଶ୍ରୀ ନୀରକିଶୋର ଦାସ, ଶ୍ରୀ ରଘୁନାଥ ମହାନ୍ତି ଓ ଅନ୍ୟାନ୍ୟ କବିମାନେ ଜାତୀୟ ସଙ୍ଗୀତକୁ ପରିପୁଷ୍ଟ କରିଅଛନ୍ତି । ଓଡ଼ିଆ ଓ ବଙ୍ଗଳା ଜାତୀୟ ସଙ୍ଗୀତ ଯେପରି ସଭା ସମିତିରେ ଏବଂ ଗୃହେ ଗୃହେ ସ୍ୱାଧୀନତା ବହ୍ନି ପ୍ରଜ୍ୱଳିତ କରେ, ସେଥି ନିମନ୍ତେ ବହୁ ଯତ୍ନ ଓ ପରିଶ୍ରମ କରି ସଙ୍ଗୀତଜ୍ଞ ସୁଗାୟକ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ଏହି କ୍ଷୁଦ୍ର ପୁସ୍ତିକା ଖଣ୍ଡିକ ସର୍ବ ସମକ୍ଷରେ ଉପସ୍ଥିତ କଲେ । ଏହି ପୁସ୍ତକର ମୂଲ୍ୟ ଅତି ସୁଲଭ ଏବଂ ଏଥିରେ ଅତି ସହଜ ସୁନ୍ଦର ଓ ବାଛି ବାଛି ଗୀତଗୁଡ଼ିକ ଦିଆ ହୋଇଅଛି । ଯେଉଁମାନେ ଦେଶ ନିମନ୍ତେ ଏପରି ସଙ୍ଗୀତ ରଚନା କରିଅଛନ୍ତି ସେମାନଙ୍କ ନିକଟରେ ଭାରତବାସୀ ଚିରକୃତଜ୍ଞ ରହିବେ ।

ଏହି ପୁସ୍ତକ ଖଣ୍ଡିକ ଗୀତରେ ଓ କାର୍ଯ୍ୟରେ ପରିଣତ ହେଉ, ଏତିକି ପ୍ରତ୍ୟେକ ଭାରତସନ୍ତାନ ନିକଟରେ ମୋର ପ୍ରାର୍ଥନା ।

ତା ୮ । ୧୦ । ୩୧ } ଶ୍ରୀ ପୂର୍ଣ୍ଣଚନ୍ଦ୍ର ଘୋଷ ।

# ସୂଚୀ ।

—○◆○—

# ଉତ୍କଳ

# ଜାତୀୟ ସଙ୍ଗୀତ ।



ଭୈରବୀ ରାଗ-କାୱାଲୀତାଳାଭ୍ୟାଂ ଗୀୟତେ ।

ସର୍ବେଷାଂ ନୋ ଜନନୀ ଭାରତ
ଧରଣୀ କଳ୍ପଲତେୟଂ ।

ଜନନୀବତ୍ସଲ ତନୟଗଣୈସ୍ତତ୍-
ସମ୍ୟକ୍ ଶର୍ମ୍ମ ବିଧେୟଂ । ଧ୍ରୁବଂ ।

ହିମଗିରି-ସୀମନ୍ତିତ-ମସ୍ତକମିଦ-
ମମ୍ବୁଧିପରିଗତ ପାର୍ଶ୍ୱମ୍ ।

ଅସ୍ମଦଜନ୍ମଦମନ୍ତଦମନଶଂ
ଶ୍ରୀତ ପୁରାତନମାର୍ଷମ୍ ॥

ବିଜୟତ ସ୍ୱର୍ଗଂ ଭାରତବର୍ଷଂ
ବିଶ୍ୱୋତ୍କର୍ଷନିଦାନମ୍ ।

ଭାରତ ଶର୍ମ୍ମଣି କୃତମସ୍ମାଭି—
ର୍ନବମିଦମୈକ୍ୟବିଧାନମ ॥

ଉତ୍କଳ ଗୌଡ଼ାନ୍ଧ୍ରୀୟାଃ ସର୍ବେ
ଯେ ବୟମତ୍ର ସମେତାଃ

ଏତେ ସ୍ୱପର ଜନପଦଜା ନନୁ
ଭାରତ-ବତ୍ସତ ନଚେତାଃ ॥

ଭାରତ ହିତ ସମ୍ପାଦନମେବହି
କାର୍ଯ୍ୟମିଷ୍ଟମସ୍ମାକମ୍ ।
ଭାରତବର୍ଜ୍ଜଂ କମପି ନ କାର୍ଯ୍ୟଂ
କଣ୍ଠିତ ମିତ୍ୟସ୍ମାକମ୍ ।।
ଭାରତପଙ୍କଜଦଳମିଦମୁତ୍କଳ-
ମଣ୍ଡଳମିତି ବଦତଂ ସନ୍ତୁ
ତସ୍ୟ କୃତେ ବୟମେବ ସମେତା
ବନ୍ଦତାଦୋତ୍କଳ ସୁସତ ।।
ଭାରତମେକାଗତରସ୍ମାକଂ
ନାସ୍ତିପର ଭୁବନାମ ।
ସର୍ବାଦୌ ପରଷତ୍ କର୍ମଣିତତ୍
ଭାରତମେବ ନମାମଃ ।।
ଗର୍ଜିତ ଫେନିଲ ନୀଲନୀର ନିଧି-
ସିକତାସ୍ତୂପ ବଶନେ ।
ଇନ୍ଦ୍ରଦ୍ୟୁମ୍ନାନଙ୍ଗଭୀମନୃପ-
ଶାଶ୍ୱତ କୀର୍ତ୍ତି ସଦନେ ।
ଚୈତନ୍ୟାଦିକ ଭକ୍ତବୃନ୍ଦପଦ-
ରଜସା ଚିର ପରିପୂତେ ।
ପଦ୍ମନାଭକୃତସଦ୍ମତୟା
ତୀର୍ଥାନାଂ ତୀର୍ଥୀଭୂତେ ।।
ନୀଳାଚଳନଗରେ ପରିଗୀତଂ
ଭାରତଭକ୍ତିପରାଣାଂ ।
ଭାରତ ବନ୍ଦନମିଦମସ୍ମାକଂ
ମୁଦମାବହତୁ ନରାଣାଂ ।

( ରାଧାନାଥ )



( ୨ )

ତଲକାଽମୋଦ--ଝାଁପ ତାଲ ।

ବନ୍ଦେ ମାତରମ୍ ।

ସୁଜଲା ସୁଫଲାଂ, ମଲୟଜ ଶୀତଲାଂ
ଶସ୍ୟଶ୍ୟାମଲା, ମାତରମ୍ ।

ଶୁଭ୍ର-ଜ୍ୟୋସ୍ନା-ପୁଲକିତ-ଯାମିନୀଂ,
ଫୁଲ୍ଲ-କୁସୁମିତ-ଦ୍ରୁମଦଲ-ଶୋଭିନୀ
ସୁହାସିନୀ, ସୁମଧୁର ଭାଷଣାଂ
ସୁଖଦାଂ; ବରଦାଂ ମାତରମ୍ ।
ତ୍ୱଂହି ଦୁର୍ଗା ଦଶପ୍ରହରଣ-ଧାରିଣୀ,
କମଳା କମଳ-ଦଲ ବିହାରିଣୀ,
ବାଣୀବିଦ୍ୟାଦାୟିନୀ,
ନମାମିତ୍ୱାଂ ।

ନମାମି କମଲାଂ ଅମଲାଂ ଅତୁଲାଂ
ସୁଜଲାଂ, ସୁଫଲାଂ ମାତରମ ।

ଶ୍ୟାମଲାଂ, ସରଲାଂ, ଭୂଷିତାଂ
ଧରଣୀଂ, ଭରଣୀଂ, ମାତରମ୍ ।

—ବଙ୍କିମଚନ୍ଦ୍ର



( ୩ )

ଭଲଲୋକ ଦେଖି ବୋଝ ବଧ ହେ
ସୋଡ଼ା ଲେମନେଡ଼ ଖାଅନା ।
ଘୋଡ଼ା ଗାଡ଼ି ଚଢ଼ି ମୋହବତେ ପଢ଼ି
ବେଳକୁ କୁସଙ୍ଗି ଦ୍ୱଅନା । ପଦ ।
ତିନ ବରଷରେ ବାବୁମାନେ ଥରେ
ଆସି ପହଞ୍ଚନ୍ତି ତୁମ୍ଭର ଦୁଆରେ ।
କାହିଁ ଧମକାଇ କାହିଁ ଚମକାଇ
କାହିଁ ବା କରନ୍ତି ପ୍ରାର୍ଥନା । ୧ ।
କମିସନ ହେଲେ ଚଉକ ପାଇଲେ
ଭୁଲି ଦେଶକଥା ହାଁଜି ହାଁଜି କଲେ ।
ରାଏ ବାହାଦୁର ଖାଁ ବାହାଦୁର
ପଦ ଲାଗି କଲେ ସାଧନା । ୨ ।
ଖୁନ୍ଦି ଖୁନ୍ଦି ବଡ଼େ ଦେଖ ପଟାକର
ଯା ଲାଗି ଦୋକାନ ହୁଏ ହରବର ।
କୂଅ ପାଇଖାନା କରିବାକୁ ମନା
ମଞ୍ଜୁର ନ ମିଳେ ମାଗଣା । ୩ ।
କଳଅଡ଼େ ଦେଖ କପର ସୁନ୍ଦର
ଆଲୁଅ ଦଅନ୍ତି ମନେରଖି ଡର,
ତୁମ୍ଭର ଅଲେକ ଏତେ ଜକ ଜକ
କରିଦଏ ଅନ୍ଧାର କଣା । ୪ ।
ଖରାଦିନେ ରାସ୍ତା ନାଲି ଧୂଳି ଉଡ଼ି
ଘରଦ୍ୱାର ଯାଏ ନାଲିରଙ୍ଗେ ବୁଡ଼ି,
ଆଖି ମଳି ମଳି ଝୁଲେ ଗଳି ଗଳି
ଅସହ୍ୟ ତାହାର ବେଦନା । ୫ ।

ନଳାମୁହଁ କାଢ଼ି          କଣା ମୂତଗାଡ଼
ଗନ୍ଧାଏ ପବନ ପାଣି ଧାଡ଼ି ଧାଡ଼ି ।
ମଇଲା କୀଟାଣୁ          ହୋଇ ସାଣୁ ସାଣୁ
କେତେ ରୋଗ ଆଣେ କହନା । ୬ ।

ପଚର ପଚର ବର୍ଷାଦିନେ ରାସ୍ତା
ଗାଡ଼ି ଗଲାବେଳେ କପର ଅବସ୍ଥା
ପିଚ ପିଚ ଜଳ          ଜରେ କଲବଲ
କ କରିବ ତାହା ବର୍ଣ୍ଣନା । ୭ ।

ସ୍ୱାସ୍ଥ୍ୟରକ୍ଷା ପାଇଁ          ଟଙ୍କା ଛଣି ଛଣି
ନେଇ ଗୃହକରଙ୍କୁ ଦେଉଛନ୍ତି ଗଣି,
ଅଉଷଧ ନାହିଁ          ଡାକ୍ତର ନାହିଁ
ପଡ଼ି ପଡ଼ି ଭୋଗ ଯନ୍ତ୍ରଣା । ୮ ।

ମ୍ୟୁନିସିପାଲିଟିରେ          ଥାଏ ଯେଉଁ ପାଣି
ମିଠାଇଖିଆରେ ଦିଅନ୍ତି ସେ ବାଣ୍ଟି ।
ଲାଟ କମିସନ          କଲେ ଆଗମନ
ତହୁଁ ଯାନ୍ତି ଅଭ୍ୟର୍ଥନା । ୯ ।

—ରଘୁନାଥ ମହାନ୍ତି



( ୪ )

( ଶ୍ୟାମେର ବଂଶୀ ବାଜ-ସୁରେ )

ଧନ୍ୟ ମହାତ୍ମା ଧନ୍ୟ ତବ ଧର୍ମ ତବ କର୍ମ
ତବ ଜନ୍ମକାଳୀ ଧନ୍ୟ । ଘୋଷା ।
ଶତବର୍ଷ ପରେ ନିଦ୍ରିତ ଭାରତ,
ତବ କୃପାବଳେ ହୋଇଛି ଜାଗ୍ରତ,
ତବ ଶୁଭ ନାମେ ଉଚ୍ଛୁଳେ ଅବନୀ
କି ନଗରୀ କି ଅରଣ୍ୟ । ୧ ।
ସବୁ ଧର୍ମ ଶାସ୍ତ୍ରକର ଅଧ୍ୟୟନ,
ହଂସ ସମ ଜଳୁଁ ଦୁଗ୍ଧ କରି ଭିନ୍ନ,
ଅହିଂସା ଧର୍ମକୁ କଲ ମୂଳମନ୍ତ୍ର
ସଞ୍ଚାରି ପ୍ରୀତି ସୌଜନ୍ୟ । ୨ ।
ଭାରତ ପାଇଁ ପକାଇ ଲୋତକ,
ଭସାଇ ନେବ କି ତାହାର ପାତକ ?
ଆମ୍ଭ ଦୁର୍ଦ୍ଦଶାକୁ ଦୂର କରିବାକୁ
ଆଉ କେହି ନାହିଁ ଅନ୍ୟ । ୩ ।
ଉତ୍ଥାନ ପତନ ବନ୍ଧୁର ପଥରେ
ସାରଥି ହୋଇଛ ଏ ରଣ ରଥରେ
ରଣି ଧରି ଧାଉଁ ଅମ୍ଭେ ଯାତ୍ରୀ ସବୁ
ନର ନାରୀ ଅଗଣ୍ୟ । ୪ ।
ଦେଶବନ୍ଧୁ ମହମ୍ମଦ ସଉକତ
ଗୋପବନ୍ଧୁ ମୋତିଲାଲ ଲାଜପତ
ସଙ୍ଗେ ଘେନିଅଛ ସ୍ୱାଧୀନତା ଯୁଦ୍ଧେ
ମହା ମହା ବୀର ସୈନ୍ୟ । ୫ ।

—ରଘୁନାଥ ମହାନ୍ତି

—✻○✻—

( ୫ )

( ବନ୍ଦୀସ୍ଥ ଦାଓ ମା ଫିରେ ଅସି--ସୁରେ )

କ ପାଠ ମୁଁ ପଢ଼ିଲି କରମ ଧରମ
ଯେତେ ସବୁ ମୁଁ ଭୁଲିଲି । ପଦ ।

କାହିଁ କାହା ଓଳିତଳେ କାହିଁ କାହା ବାଡ଼ମୂଳେ
ଯାଠି ଫିକେଟ ପାଇଁ କେତେ ଚରଣେ ପଡ଼ିଲି । ୧ ।

ଏ, ବି, ସି, ଡି, ପାଠପଢ଼ି- ମନଥାନ ଜ୍ଞାନ ଭୁଡ଼ି
ବାପାଙ୍କ ମୁଣ୍ଡରେ ଅଗେ ସାଦରେ ଚଢ଼ିଲି । ୨ ।

ଅମୁକ ସମୁକ ବନ୍ଧୁ କଣିବାକୁ ବୋଲି କନ୍ଧୁ
ବାପାଙ୍କର ପୋତାଧନ ସବୁତ କାଢ଼ିଲି । ୩ ।

କଲି ଘଇ ବଏ, ପାସ ଯୋଗ୍ୟ ନୁହେଁ କାଟି ଘାସ
ନିଜ ବ୍ୟାଗ୍‌ଖଣ୍ଡି ନିଜେ ବୋହି ନ ପାରିଲି । ୪ ।

ବାପା ଜମି ବାଡ଼ି ବିକ ମତେ ଗ୍ରୁହାନ୍ତ ଏଣିକ
ଏପ୍ରେଣ୍ଟିସ କରିବାକୁ ଖରଚ ଲୋଡ଼ିଲି । ୫ ।

ଶଠିଲେଖି ଜାଣେନାହିଁ ପଣକଅ ମନେ ନାଇଁ
କରଣୀ ଅକ୍ଷର ଥରେ ପଦେ ନ ପଢ଼ିଲି । ୬ ।

ପଦେ ଭାଗବତ ଶ୍ଳୋକ ବୋଲିବେଲେ ଅସେ ଶୋକ
ପୂରୁବ କବିତା ପଢ଼ି ମୁହଁକୁ ମୋଡ଼ିଲି । ୭ ।

--ରଘୁନାଥ ମହାନ୍ତ



( ୨ )

( ଶୟନେ ସ୍ୱପନେ--ଢଙ୍ଗରେ )

ଉଠାଅ ଉଠାଅ ବିଶାଳ ନିଶାଣ ସେହି ଉତ୍କଳ-ଦୁଆରେ ।
ଉଡ଼ାଅ ସୁବର୍ଣ୍ଣ ସୂର୍ଯ୍ୟ ବିମଣ୍ଡିତ ବିଶାଳ ବୀର ଧ୍ୱଜାରେ ॥

ପୁରୁଷ ଉତ୍ତମ ଯାହାର ସମ୍ମାନ
ସାକ୍ଷାତେ ଶ୍ରୀକ୍ଷେତ୍ର ଅଟେ ଯେଉଁ ସ୍ଥାନ
ଜଳେ ସ୍ଥଳେ ଜୀବ ମୁକ୍ତ ଅନ୍ତରୀକ୍ଷେ,
ମୁକ୍ତି ମିଳଇ ଯାହାରେ । ୧ ।

ଚନ୍ଦ୍ରସର ସାଧେ ଯା' ଅବଗାହନ
କ୍ରୀଡ଼ାକାନନ ଯା' ଏକାନ୍ତ କାନନ
କଳ୍ପବଟ ଛାୟା ଯା' ଆଶ୍ରୟ ସ୍ଥାନ,
ସ୍ୱର୍ଗ ମୋକ୍ଷ ଏକାଧାରେ । ୨ ।

ନିର୍ମାଲ୍ୟ କଣିକା ଯା'ର ଅନ୍ନଗ୍ରାସ
ପାପି-ତାପି-ଜନ-ପାପ କରେ ହ୍ରାସ
ବୁଦ୍ଧ ଚଇତନ୍ୟ ଶଙ୍କର ବୈଷ୍ଣବ,
ସରବେ ଯହିଁ ଏକାରେ । ୩ ।

ପ୍ରଥମ ପ୍ରଭାତ କୋଣାର୍କେ ଯାହାର
ପ୍ରଥମ ସାମରବେ ଯାର ଓଁକାର
ସରବ ପ୍ରଥମେ ଶଙ୍ଖଧ୍ୱନି ଯା'ର
'ଭୁବନେଶ୍ୱର'-ଦୁଆରେ । ୪ ।

--ବନମାଳୀ ମିଶ୍ର



( ୭ )

ମାଆ ମାଆ ବୋଲି ଡାକୁଛ କ ମୋତେ ଅରେ ମୋ ଦୁଃଖପାସୋରା
କାହିଁ ଯାଇଁ ତେଇଁ ଶୋଇଥିଲ ବାପ ମୋ ମନ-ନୟନ-ତାରା ॥

ଏବେଁ ନାର କ୍ଷୀର ରୁପେ ମୋ ରୁଧିର
ଏଦାଣ ହୃଦୟ ଯୋଗାଏଁ ଅହ୍ୱାର
ମୋ ସୁଖ ସମ୍ପଦ କରିଅଛି ଦୂର
ଭୁଲି ଯାଉଅଛ ପରା ।

ମୁଣ୍ଡ ଗଣ୍ଡି ମୋର ହୋଇ ଖଣ୍ଡ ଖଣ୍ଡ
ମୋ ସୁନା ସଂସାର ହେଲା ଲଣ୍ଡ ଭଣ୍ଡ
ଦେଖୁଥିବ କରେ ମା'ର ଏହ୍ନ ଦଣ୍ଡ
ମୋ ଧନ-ସର୍-ପସରା ।

ହାତ ଓଠ ଧରି କହୁଛି ରେ ଧନ
ମୋ ଦୁଖ ନାଶନେ ବଳା ଏବେ ମନ
ଛାଡ ହିଂସା, ଦ୍ୱେଷ, ମାନ ଅଭିମାନ
ମାତା-ଦୁଃଖ-ଶୋକହରା ।

ମୋ ବାପ ପରି ରେ ଜଗତର ପିତା
ଦୁଖିନୀ ବୋଲି କ ହେବ ତାଙ୍କୁ ପିତା
ପୂତ ବଳେ ମୁଁ ତ ହେବ ଜଗଜ୍ଜିତା
ଧ୍ରୁଏ ପଣ କଲେ ପରା ।

ବ୍ରଜସୁନ୍ଦର--



( ୮ )

ଉଡାଇ ନିଶାଣ ବଜାଇ ଭେରୀ ଜଗାଇ ବିପୁଳ-ପୁଲକ-କମ୍ପ
ମନ୍ତ୍ର-ପୂତ-ଅନଳ ଭେଦି ଏ ଜାତି ଯେଦିନ ଦେଲାରେ ଲମ୍ଫ

( କୋରସ )

ଉଠିଲା ଗର୍ଜି ଦୀପ୍ତ-ଅଶନି ସଘନେ ଗଗନ-ବକ୍ଷେ
ସୌର-ଜଗତ ସ୍ତମ୍ଭିତ ହୋଇ ରହିଲା ମୁଗ୍ଧ-ଚକ୍ଷେ ।

ଚୂର୍ଣ୍ଣ କରଣ ଶୈଳ-ଶିଖର ମନ୍ଥି କରାଳ-ଅତଳ-ସିନ୍ଧୁ
ବିଶ୍ୱ-ବିଜୟ କରିଲା ଯେ ଦିନ ଝଞ୍ଜା-ସମାନ ପ୍ରବଳ ହିନ୍ଦୁ;
ଅରାତି ରକ୍ତେ ରଞ୍ଜି ଖଡଗ ସ୍ଥାପିଣ ଯେ ଦିନ ଧର୍ମ-ରାଜ୍ୟ
ଢାଳି ତପ୍ତ-ଶୋଣିତ-ଧାରା ଅବନୀ-ଭାରା ରହିଲା ଅର୍ଘ୍ୟ;

( କୋରସ )

ଉଠିଲା ଗର୍ଜି ଦୀପ୍ତ-ଅଶନି ସଘନେ ଗଗନ-ବକ୍ଷେ
ସୌର-ଜଗତ ସ୍ତମ୍ଭିତ ହୋଇ ରହିଲା ମୁଗ୍ଧ-ଚକ୍ଷେ ।

ଭୈରବ-ରବେ ହୁଙ୍କାର ଗୁରୁ ଟଳାଇ ମେରୁ କରଣ ଦମ୍ଭ
ସପ୍ତ-ସାଗର-ପ୍ରାନ୍ତେ ଏ ଜାତି ପୋତି ଯେ ଦିନ କୀର୍ତ୍ତି-ସ୍ତମ୍ଭ;
ବିରାଟ-ଧ୍ୱଂସ-ପୁଞ୍ଜ ଉପରେ ରଚଣ ନିତ୍ୟ-ନୂତନ-ସୃଷ୍ଟି
ଯେ ଦିନ ଏ ଜାତି ଚରମ-ସତ୍ୟ ଦେଖିଲା ଲଗାଇ ପରମ ଦୃଷ୍ଟି;

( କୋରସ )

ଉଠିଲା ଗର୍ଜି ଦୀପ୍ତ-ଅଶନି ସଘନେ ଗଗନ-ବକ୍ଷେ
ସୌର-ଜଗତ ସ୍ତମ୍ଭିତ ହୋଇ ରହିଁଲା ମୁଗ୍ଧ-ଚକ୍ଷେ ।

--ଲକ୍ଷ୍ମୀକାନ୍ତ ମହାପାତ୍ର



## ୯-ଇମନ୍ ପୂରବୀ--ଏକତାଲା ।

### ବନ୍ଦ ମାତା ପଦ୍ମରେ--

ଆସ ଭାଇ ଭଗ୍ନି ! ହୋଇ ଏକପ୍ରାଣ,
ଭୁଲି ହିନ୍ଦୁ ଜୈନ ବୌଦ୍ଧ ମୁସଲମାନ,
ଭାରତ ସନ୍ତାନ, ନୋହୁ ଭିନ୍ନ ଭିନ୍ନ
ମା' ଦୁଃଖିନୀ ତବ ଏକରେ ।

ଏକ ଦେଶେ ବାସ, ଏକ ସ୍ୱାର୍ଥ ଆସ,
ଏକ ପ୍ରେମ ମୁକ୍ତି କରମ ବିଶ୍ୱାସ,
ଏକ ସୁଖ ଦୁଃଖ ଏକ ଶାନ୍ତି ମୋକ୍ଷ,
ମା' ଦୁଃଖିନୀ ତବ ଏକରେ ।

ନିଜ ସ୍ୱାର୍ଥେ କିଆଁ ଦଳିଭାଇ ! ପ୍ରାଣ,
କ୍ଷୁଣ୍ଣ କର ତବ ଜନନୀ ସମ୍ମାନ,
କର କଳୁଷିତ, ଭାଇର ଶୋଣିତେ
ମା' ଦୁଃଖିନୀ ତବ ଏକରେ ।

ଏକତା-ମଙ୍ଗଳ-- ମନ୍ତ୍ର ଉଚ୍ଚେ ଗାଇ
କୋଳେ ଘେନାଘେନି କର ଭାଇ ଭାଇ
କେ ମିତ୍ର ଅମିତ୍ର ଏ ଭୂମି ପବିତ୍ର
ତ୍ରିଂଶକୋଟି ସବୁ ଏକରେ ।

—ଉତ୍କଳ ସଙ୍ଗୀତ ସମାଜ ।



( ୧୦ )

ଗାଇବ କ ଗାନେ ମୋହିବ କ ତାନେ
ଆଜ ଏ ଆନନ୍ଦ ଧାମେ । ।

ବାରବାଟୀ ଦୁର୍ଗେ ବାଜୁ ନାହିଁ ବାଜା
ବାରବାଟୀ ଦୁର୍ଗେ ଉଡୁ ନାହିଁ ଧ୍ୱଜା
ସୁପ୍ତ ବାରବାଟୀ ମୃତ ଶୈଳ ପ୍ରାୟେ
ପଡ଼ି କାନ୍ଦେ ଘୋର କଷଣେ ॥

ନାହିଁରେ ଉତ୍କଳେ ସେ ସାହିତ୍ୟପୁଞ୍ଜ
ନାହିଁ ଅଭିମନ୍ୟୁ, ନାହିଁ ଉପଇନ୍ଦ୍ର
ସେ ବୀଣା ଝଙ୍କାର ତାନେ ॥

ନାହିଁ ଉତ୍କଳର ତନ୍ତୁବାୟ କୁଳ
ନାହିଁ ଉତ୍କଳର ପୂରୁବ ସମ୍ବଳ
ନାହିଁ ବ୍ୟବସାୟ ସମବେତ ଚେଷ୍ଟା
କେବଳ ଉତ୍କଳ ଧାମେ ।

--ଅଜ୍ଞାତ



( ୧୧ )

ରାଗ ମିଶ୍ରଣ--ଏକତାଳ ।

ଜାଗ ହେ ସକଳେ ଆଜ ଏତେ କାଳେ
କାଳ ବଉବର୍ତ୍ତ ପାହିଲାଣି ।
ଶୀକର-ଶୀତଳ ସମୀର ହିଲ୍ଲୋଳ
ଧୀରେ ଧୀରେ ଦେହ ଛୁଇଁଲାଣି । ପଦ ।

ନବ ପ୍ରାଣ ପାଇ ନବ ନେହେ ଗୃହଁ
ଆସ ଆସ ବେଗେ କର୍ମ-ସ୍ରୋତେ ଧାଇଁ;
ନବୀନ କିରଣ ପ୍ରତି ବାତାୟନ
ହସି ହସି ଆସି ଚୁମ୍ବିଲାଣି ।

ସେ କାଳର ସ୍ମୃତି ସେ କାଳର ବୃତ୍ତି
ହେଉଛ ଚେତ ବାଟେ ସେ କାଳର ସ୍ଫୂର୍ତ୍ତି;
ଅଶେଷ କୁସୁମ-ଗନ୍ଧ ଅନୁପମ
ଚହଟାଇ ମନ ମୋହିଲାଣି ।

ଭାରତର ସ୍ତମ୍ଭ ତୀର୍ଥ-ତୀର୍ଥା-ଲମ୍ବ
ଦେଖି ମନେ ଆଣ ବୀରେଶ୍ୱରର ଦମ୍ଭ;
ବିହଙ୍ଗ କାକଳୀ ଝଙ୍କି ବନସ୍ଥଳୀ
କୁହୁରବେ ସୁଧା ଢାଳିଲାଣି ।

ଅଳସ ଅବଶ ଯେ ହୃତ ସାହସ
ସାହା ହୋଇ ତାକୁ କରଥ ସର;
ବ୍ରାହ୍ମୀ-ବୈତରଣୀ-ଚିତ୍ରୋତ୍ପଳା ରମି
ସୁଖର ତରଙ୍ଗ ଖେଳିଲାଣି ।

ଉତ୍କଳର ବଳ ଉତ୍କଳର ହିତ
କଣି ରଖୁ ପ୍ରତି ଉତ୍କଳୀୟ ଚିତ୍ତ
ମହେନ୍ଦ୍ର-ଶିଖରେ ଦୈବ ଇଙ୍ଗିତରେ
ଜୟ-ବୈଜୟନ୍ତୀ ଉଡ଼ିଲାଣି ।

—କୃଷ୍ଣମୋହନ ପଟ୍ଟନାୟକ



୧୨—ଆଶା ଭୈରବୀ—ତାଲ ଏକତାଲା ।

ଭାରତ ମୋ ମା, ଭାରତ ମୋ ମା,
ସେ ଜ୍ଞାନ ସେ ଧ୍ୟାନ ସେ ମୋ ଗାରିମା ।
ତା ଲାଗି କାନ୍ଦ ତା କୋଳବାସୀ, ସହସ୍ର୨ ହେଲେ କାରାବାସୀ
ସୁଯୋଗେ ଅସହଯୋଗ ପ୍ରକାଶ ହେଲେ ମହାତ୍ମା । ୧ ।
ତା ପୁଣ୍ୟାଲୋକେ ସାରାଜଗତ, ମନୁଷ୍ୟତା ବୁଝି ଆଜି ଉନ୍ନତ
ଆଦର୍ଶ ହେବ ମା ଭାରତ ଗାଇ ମହିମା । ୨ ।
ତା ଲାଗି ଦଅ ହେ ଧନ ଜୀବନ, ମାନବ ଜୀବନ ହୋଇବ ଧନ୍ୟ
ଗାଅ ଏକକଣ୍ଠେ ସ୍ୱାଧୀନ ଭାରତ ଜୟ ଜୟ୨ ମୋ ମା ।୩।

—ଶ୍ରୀଧର ସାହୁ



୧୩—ଥିଏଟର ସୁର ।

ପରପାଇଁ ପର ଦେଖେ ବୁଲେ ମୁହିଁ । ପଦ ।
ପର ବୋଝ ମୁଣ୍ଡେ ଶ୍ରମ ଝାଳ ତୁଣ୍ଡେ
ଆହା କଏ କରେ ନାହିଁ ରେ ।
ପର ଦୁଃଖେ ଦୁଃଖୀ ପର ସୁଖେ ସୁଖୀ
ପରଲାଗି ସବୁ ସହି । ୧ ।
କେତେ କାହା ସଙ୍ଗେ ଖେଳେ ନାନାରଙ୍ଗେ
ମୋହ ଭବ ମୁଁ ବୁଝଇ ରେ ।
ନାବରେ ନାବିକ ବଣରେ ରକ୍ଷକ
ରାଜ୍ୟରେ ରାଜା ବୋଲାଇ । ୨ ।

—ଅଜ୍ଞାତ



( ୧୪ )

ଘୂରଅଡ଼େ ପଡ଼ିଅଛୁ ଉନ୍ମତ୍ତ ଚଞ୍ଚଳ,
ଛିଦ୍ରିତ କି ରହିଥିବ ଉତ୍କଳ କେବଳ ?
କେ ବୋଲେ ନିଃଶ୍ଚେଷ୍ଟ ଅଛନ୍ତି ଉତ୍କଳବାସିଏ ?
ଏମାନଙ୍କ କଷ୍ଟକଥା ବୁଝିଲା ବା କିଏ ?
ପୁରୁଭୁଜ ପର କଣ୍ଠା ଯାଇ ଖଣ୍ଡ ଖଣ୍ଡ,
ଜୀବନ୍ତ ଥିକଲେ ହେଉଛନ୍ତି ଲଣ୍ଡଭଣ୍ଡ ।
ମୁଣ୍ଡଟା ରହିଲା ପାଖେ ଅଉପାଖେ ଗୋଡ଼—
ଅଲଗା ରହିଲା ବାହୁ ଲାଗୁ ନାହିଁ ଯୋଡ଼ ।
ବକ୍ଷଟିକ ଥରେ ଦେଖିଅଛ ଖଣ୍ଡି ଖାଣ୍ଡି—
ଆନନ୍ଦରେ ନାଚ ଛୁଟି ପଡ଼ିଯାଏ ଭାଙ୍ଗି ।
ହେଲେଣି ଏ ଦେଶେ ଜାତ ଅଶ୍ୱିନୀକୁମାରେ
ସଞ୍ଜୀବନୀମନ୍ତ୍ରେ ମାତା ଅଙ୍ଗ ଖଣ୍ଡିଯାଚରେ ।
ଅଛି ସୁଧାଭାଣ୍ଡ ମହାଦେବଙ୍କ ହସ୍ତରେ,
ଯତ୍ନେ ମିଳି ପଡ଼ ଯାଇ ତାହାଙ୍କ ପଦରେ ।
ମହାଦେବେ ଲଣ୍ଡଭଣ୍ଡ କରୁଚି ତ୍ରିପୁର
ଜାଣ ନିଶ୍ଚେ ହେବ ଏବେ ତାହା ଗର୍ବ ଦୂର ।
ସଜ ହୋଇ ବସିଥାଅ ଅଶ୍ୱିନୀକୁମାର,
ନେଳଉଣ୍ଡି ଆଜ୍ଞାକର କର ଝୁଣ୍ଟିଯିବ ବାରେ ।
ଜନ୍ମଭୂମି ସେତେକାଳ କି ହେବ ପୂର୍ଣ୍ଣାଙ୍ଗୀ,
ଜାଣ ନିଶ୍ଚେ ତୁମ୍ଭ ଯତ୍ନ ଯନ୍ତ୍ର ଯିବ ଭାଙ୍ଗି ।

—ଫକୀର ମୋହନ

( ୧୫ )

ତାଳ—ଅଠତାଳ ।

ମା ! କେମନ୍ତେ ଅଛୁ ଗୋ ସ
ଅନ୍ନ—ବସ୍ତ୍ର ବିନା ଜଥନ୍ତେ ମରୁଛି
ସନ୍ତାନ ତୋହର ପଦ-ଶୋଷ୍ଣ ବହୁ ।
ଅନ୍ନପୂର୍ଣ୍ଣା ରୂପେ ବିଚରୁ ନଗରେ
ଘର ଭାର ଅନ୍ନ ସାର ଏ ଜଗତେ
ତେବେ କେଉଁ ଦୋଷେ ଜନନି ଗୋ ! ସତେ
ପାଷାଣକୁ ବଳି ଗଲୁ ଦୟାମୟି !
ହେମଗିରି-ମାଳ ଯା, କୁନ୍ତଳ ହାର
ସିନ୍ଧୁ-ବ୍ରହ୍ମପୁତ୍ର ଯା'ର ସ୍ତନ୍ୟ-ଧାର
ଭାଗୀରଥି ଯା'ର ଗ୍ରୀବକଣ୍ଠ-ହାର
ତା' ସୁତ କି ହେବେ ପରପଦାଶ୍ରୟୀ !
ନର୍ମଦା-କାବେରୀ ଯା' କଟି-ମେଖଳା
ଶ୍ୟାମ-କ୍ଷେତ୍ର ଯା'ର ସୁଜଳା ସୁଫଳା
ଭଣ୍ଡାରେ ଯାହାର ଚଞ୍ଚଳା ଅଚଳା
କେଉଁ କଥାରେ ଗୋ ! ଊଣା ଅଛୁ ତୁହି ?
ଅଭ୍ର-ଭେଦୀ-ଯା'ର କିରୀଟ ଭାସ୍କର
ଯା'ର ପାଦ-ପୀଠ ଧୁଏ ରତ୍ନାକର
ସୁତଗଣ ତା'ର କ୍ଷୁଧାରେ କାତର
କେ ଅଛୁ ଜଗତେ କେ ପାରିବ କହି ?

—ଲକ୍ଷ୍ମୀକାନ୍ତ ମହାପାତ୍ର

—:*0*:—

( ୧୭ )

କହ ମା ଶାରଦେ ! କାହିଁକି ଉତ୍କଳେ
ଆଉ ତୋ ବୀଣା ନ ବାଜେ ।

ପରିହରି ମନୁ ନିଜ ସୁତା ସୂନୁ,
ଛାଡ଼ି ଯାଉଅଛ ଏ ପାପ ଭୁବନୁ,
ଦୁଃଖ-ପଙ୍କେ ପଡ଼ି ଗଲେ ମାତ ସଡ଼ି,
କେ ମୁଣ୍ଡ ପୋଛିବ ଲଜେ ।

ନାହାନ୍ତି ଜଗତେ ବଳଦେବ ରଥେ,
ଅଭିମନ୍ୟୁ, ଘନକୃଷ୍ଣ, ଜଗନ୍ନାଥେ,
ଗଲେଣି ସମସ୍ତେ, ଉପେନ୍ଦ୍ର ସହିତେ,
ଏକା ତୋ ଧ୍ୱନି ବିରାଜେ ।

ମଧୁ ସୁଧାନାଥେ ଥିଲେ ମୋ ଭରସା,
ଘୁଞ୍ଚିଥାନ୍ତା କିଛି ଉତ୍କଳ ଦୁର୍ଦ୍ଦଶା,
ତୁ ଥାଉ ଲେ ମାତା, ଅନ୍ୟଥା ହେଲା ତା,
ଏ ଲାଞ୍ଛନା ନିକ ସାଜେ ।

ଶ୍ରୀକର୍ପୂର ତିଳକ ଗଲାଣି ତ ଉଡ଼ି,
କନାଖଣ୍ଡି ଖାଲି ରହିଅଛି ପଡ଼ି,
କେତେ କାଳ ଏହା, ଦେଖାଉ ଥିବୁ ମା,
ତୋର ଏ ଶୁଭ ସମାଜେ ।

—ଅଜ୍ଞାତ



( ୧୭ )

ଜାତି ଇତିହାସ ଜାତିର ନିଝର
ତହୁଁ ବହେ ସଦା ଜାତି ପ୍ରାଣଧାର ।
ସେ ଧାରରୁ ନୀର ପିଉଛି ଯେ ନର,
ନିଶ୍ଚୟ ହେବ ସେ ଜାତି କର୍ମବୀର ॥
କଲକଲ ରବେ ଛୁଟିଛି ସେ ଧାର
ଅତୀତ ଗୌରବ ଗାଇ ନିରନ୍ତର ।
ଭାବୀ ଗୌରବର ଉଦୟେ ନାଚୁଛି,
ଯଥା ଚନ୍ଦ୍ରୋଦୟେ ନାଚେ ରତ୍ନାକର ॥
ତାର ମଧ୍ୟେ ବିଜେ ମୋହିନୀ ପ୍ରତିମା
ଦେଖ ଦେଖ ସେହି ଜନନୀ ତୋହର ।
କାନ ଡେର ଶୁଣ ମାତା କହୁଛନ୍ତି,
ଆସ ଆସ ବତ୍ସ, ନୀର ପାନ କର ॥
ଏହି ନୀର ସେବି ବୀର ମୋ ସନ୍ତାନେ,
ବୀରପ୍ରସବିନୀ କ୍ଷୀର ଏହି ନୀର ।
ଛାଡ଼ ରେ ଆଲସ୍ୟ ବଢ଼ାଅ ସାହସ,
ଜାତି-ନନ୍ଦଘୋଷ କର ଅଗ୍ରସର ॥

—ମଧୁବାବୁ

୧୮--ଖମ୍ବାଜ—ଲକ୍ଷ୍ମୀ ଠୁମରୀ ।
ନ ଜାଗିଲେ ସବୁ ଭାରତ-ଲଲନା,
ଏ ଭାରତ ଆଉ ଜାଗିବ ନାହିଁ ନା ।
ଅତଏବ ଜାଗ, ଜାଗ ଗୋ ଭଗିନୀ,
ହୁଅ "ବୀର-ଜାୟା, ବୀର-ପ୍ରସବିନୀ" ।
ଶୁଣାଅ ସନ୍ତାନେ, ଶୁଣାଅ ସେସଣି,
ବୀର-ଗୁଣ-ଗାଥା, ବିକ୍ରମ କାହାଣୀ,
ସ୍ତନ୍ୟଦୁଗ୍ଧ ଯେବେ ପିଆଅ ଜନନୀ;
ବୀର-ଗର୍ବେ ନାଚୁ ତାହାର ଧମନୀ ।
ତୁମ୍ଭେ ନ କଲେ ଏ ମହାସାଧନା,
ଏ ଭାରତ ଆଉ ଜାଗିବ ନାହିଁ ନା ।

—✲○✲— —ଅନୁଦିତ

( ୧୯ )

ଅଗଣାରେ, ଅରଟରେ ରଟ ରଟ ଶବଦ ।
ମିଶାଇ ଗାଇବୁ ତହିଁ, କୁଆଁଖି ପଦ । ପଦ ।
ମୋର ସୁନା ଭଉଣି ଲୋ ମୋର ରୁପା ଭଉଣି
ଏମନ୍ତ ସଜରେ ସୂତା କାଟିବୁ ପୁଣି ।
ଆସିବେ ବନ୍ଧୁ ବାନ୍ଧବେ, ତୋର ହାତବୁଣା ଲୁଗାପିନ୍ଧିବେ
ଦଶଙ୍କ ପରବେ ମିଳିବେ, ତୋର ଗୁଣଗୁଣି କେତେ ଝୁରିବେ
ଆଦରେ ବୁଝିବୁ ତୁତ ତାଙ୍କ ଦରଦ । ୧ ।
ମହାତ୍ମା କଥାରେ ଚଲ ଗୋ ନୋହିବ ଯେବେ ଗୋଲ ଗୋ
ଭରସା ନାହିଁ ଦାଣ୍ଡେ ଭାର ସଙ୍ଗେ କଳ ଗୋ ।
ମନରେ ହେବ ଆନନ୍ଦ ମନବାଞ୍ଛା ପୂର୍ଣ୍ଣ କରିବେ ଗୋବିନ୍ଦ
ଶାରଦରେ ସେ ଶରଦ ରଙ୍ଗୁ ଯେପରି ହୁଏ ସେ ବହନ୍ଦ
ମିଳି ଯାଅ ଭାଇ ଭାଇ ନ ରଖି ବିବାଦ । ୨ ।


—ଅଜ୍ଞାତ

( ୨୦ )

( ସୁନ୍ଦର ବାଲ୍ମ ଶଚୀ ଦୁଲାଲ—ଢଙ୍ଗେ )

ଭାରତ ବାସୀ          ଯାଉଛ ଭାସି
କର୍ମ୍ମା ଅଉ ଅଯଥା ଚମକ ଧମକେ ।
ବସି ବସି କଣେ ପଶି     ରହିବ କେତେ କାଳ,
ଦୂରେ ଘଇ ଥାଇ ଡାକତରକେ । ପଦ ।

ଆସ ଆସ ବୀରପର ସମର ସାହସ ଧରି,
ରଣ ପଥ ସ୍ତୁପ୍ୟା ଦେଖି ଟଳେ ନ ଡ଼ର,
ନିଦ୍ରା ଅଛ ପରିହର     ସରବେ ସୁମର ହର
ଜନଗଣ ମନବନ ରଣ ନାଦ୍ୟକେ । ୧ ।

ଭେଦାଭେଦ ସବୁ ଛାଡ଼ି ସ୍ୱରାଜ୍ୟର ଆଶାବାଢ଼ି,
ଧରି ବାଧା ବିଘ୍ନ ଯେତେ ଯାଅରେ ମାଡ଼ି,
ହିନ୍ଦୁ ମୁସଲମାନ ମିଳି    କର ଶାନ୍ତି ରଣ କେଳି
ଉଠ ପୂରି ପୁଲ୍ଲୀ ଭୂରି ହୁରି ଠମକେ । ୨ ।

ହିନ୍ଦୁର ସନ୍ତାନ ଅମ୍ଭେ ଜାଣି ରଖି ସଦା ଭାଇ
ପ୍ରାଣଯିବା ପର୍ଯ୍ୟନ୍ତ ଛାଡ଼ିବୁ ନାହିଁ,
ହୁଅ ନାହିଁ ରେ ଅଧୀର     ନରବୀର ଶିର ସ୍ଥିର
କଳଙ୍କିତ ନୁହେ ପଳାତକ କଳଙ୍କେ । ୩ ।

ଅଜ୍ଞାନ ତିମିର ଗ୍ରସ୍ୟା ଗଲାଣିତ ଅପସରି,
ମରିଚମାଳିନୀ ଦିଗ୍‌ବଳୟେ ଚରି,
ଉଦ୍‌ଘାଟ ହେଲେ ଅବିକଳ     ଲାଗିଲାଣି କୋଳାହଳ
ଧରଣୀ ଡାକୁଛି ଅସ ଶାନ୍ତରଙ୍ଗକେ । ୪ ।

—ରଘୁନାଥ ମହାନ୍ତି

୨୯-( ଗଲଣିଭ ଗଲା କଥାରେ—ବୃଷଭ )

ପୁଲକିତ ଗାତ୍ର ଆଜ ହେ ସୋଦରେ ପୁଲକିତ ଗାତ୍ର ଆଜ,
ଏକ ମାତା କୋଳେ ସମାଗତ ଦେଖି ଉତ୍କଳ-ସୁତ-ସମାଜ ।
ନବ ଜାଗରଣ ଉତ୍କଳ ସନ୍ତାନ ଧମନୀରେ ମାତୃସ୍ନେହ,
ଢାଳି ଦେଲା ବୋଲି ଭାଳିବାକୁ ଆହା ! କଣ୍ଟକିତ ହୁଏ ଦେହ ॥
ଅତୀତ ଗୌରବ ସୁମରଣ ପ୍ରତି ଆଦର ନାହିଁ କି ଭାଇ,
ଯାହା ଲାଗି ଆହା ଓଡ଼ିଆଙ୍କୁ କେହି ମାନବେ ଗଣନ୍ତି ନାହିଁ ।
"ଜନନୀ ଜନମ ଭୂମି ସ୍ୱର୍ଗ" କଥା ଏହି ଦେଶୁଁ ଉତପତ୍ତି,
ଜୀବନେ ଦେଖାଇ, ଠେକାଇବା ଭାଇ କ୍ଷିତିରେ ଭାରତ ଛତି ।
ମଣ ନାହିଁ ତେବେ ନିଜକୁ ସାମାନ୍ୟ, ତୃଣଗୁଚ୍ଛ ଏକମେଳେ,
ଜାଣିଥିବ ଭାଇ, କରି ପାରେ ବଶ ମତ୍ତ କରୀବର ହେଲେ ।
ତେବେ ଆସ ମୋର ପ୍ରିୟ ସହୋଦର ସୁମରି ବିଶ୍ୱଜୀବନ
ଏକମନ ହୋଇ ଦେଶହିତ ପାଇଁ ସମର୍ପି ଦେବା ଜୀବନ ।

—॥୦॥— —କୃଷ୍ଣମୋହନ ପଟ୍ଟନାୟକ

( ୨୨ )

ଅଙ୍ଗେ ଅଙ୍ଗେ ବହି ନବ ତେଜ ସଙ୍ଗେ ସଙ୍ଗେ ମୋହ ମନୁ ତେଜ
ଅମ୍ବର ଚୁମ୍ବି କଣ୍ଠେ ଗାଅ ଜନନୀର ଜୟ ଜୟ ସଙ୍ଗୀତ ॥
ଦୂର ଅନନ୍ତ ଗଗନେ
ନବ ସୁନ୍ଦର ଇନ୍ଦୁ ବସି ଗୋପନେ,
ସ୍ମିତକ ସାଥେ ଆନନ୍ଦେ ଗାଏ ଜନନୀର ଜୟ ଜୟ ସଙ୍ଗୀତ ।
ମନ୍ଦେ ରଜ ବହି ଗନ୍ଧେ ବାୟୁ ବହି ଛନ୍ଦେ ଗାଏ ଜୟ ସଙ୍ଗୀତ ॥
ପକ୍ଷୀ ଗାଉଛନ୍ତି ଲତା କୁଞ୍ଜେ,
ମଧୁପ ଗାଏ କୁସୁମ ପୁଞ୍ଜେ
ବୃନ୍ଦେ ଉଠ ଧ୍ୱନି ଦାଣ୍ଡେ ଦେଶେ ନ ଶୂନ୍ୟେ ଶୁଭେ ଜୟ ସଙ୍ଗୀତ ।
ନୃତ୍ୟପାତ, ଧନଲୁତ ଗାଅ ମାତ ଜନନୀର ଜୟ ଜୟ ସଙ୍ଗୀତ ॥

—ଗୋବିନ୍ଦଚନ୍ଦ୍ର ଶୂରଦେଓ



( ୨୩ )

ଆଜ ଏକତାନେ ବୋଲ ଭାଇମାନେ
ବନ୍ଦେ ଶ୍ରୀଭାରତ ଜନନୀଂ ।
ଭୁଲି ଜାତି ଭେଦ ଭୁଲି ନିଜପଦ
ବୋଲ ବୋଲ ବନ୍ଦେ ଜନନୀଂ । ୦ ।
ହୀରକ ଖଚିତ ଶିରସ୍ତ୍ରାଣ ଛଳେ,
ଭୂଷିତ ମସ୍ତକ ଯାର ହିମା ଚଳେ,
ଉଦ୍‌ଭାସିତ ପୁଣି ଯାହାର ସୁମାଳେ,
ବନ୍ଦେ ତାଂ ଭୁବନମୋହିନୀଂ ।
ଜାହ୍ନବୀ ଯମୁନା ଆଦି ସ୍ରୋତସ୍ୱତୀ,
ରତ୍ନହାର ସମ ଧରଣ ସୁକାନ୍ତି,
ମଣ୍ଡିଛନ୍ତି ଯାର ସମୁନ୍ନତ ଗ୍ରୀବି,
ବନ୍ଦେ ତାଂ ପୀୟୂଷବାହିନୀଂ ।
ଦଳେ ଦଳେ ଯାର ଗୀତ ବାଳାଗଣ,
କଳ କଳ ହସି ଚୁମ୍ବନ୍ତି ଚରଣ,
ପ୍ରେମରସେ ଅବା ହୋଇ ନିମଗନ,
ବନ୍ଦେ ତାଂ କମଳରୂପିଣୀଂ ।
ପଦତଳେ ଯାର କନକ ସିଂହଳ,
ଶ୍ରୀଚରଣେ ଯଥା କନକକମଳ,
ଲବଣ ସଲିଳେ ହୁଏ ଢଳ ଢଳ,
ବନ୍ଦେ ତାଂ ବାରିଜବାସିନୀଂ ।
ମୁକ୍ତାଜଡ଼ିତ, କଟିବନ୍ଧ ପରି,
କଟିତଟେ ଯା'ର ଶୋଭେ ଗୋଦାବରୀ,
ଝୁମୁଜାଇ ହୃଦେ ପୁଲକଲହରୀ,
ବନ୍ଦେ ତାଂ ଆନନ୍ଦଦାୟିନୀଂ ।

ସର୍ବ ଅଙ୍ଗେ ଯା'ର ଆଭରଣ ସମ,
ଅଗଣ୍ୟ ଅମୂଲ୍ୟ କୀର୍ତ୍ତି ଅନୁପମ,
ବିରାଜିତ ଅଜ ଜନ ମନୋରମ,
ବନ୍ଦେ ତାଂ ସୁଭୂଷାଶୋଭିନୀଂ ।

ରାମଚନ୍ଦ୍ର ଆଦି କର୍ମବୀରଗଣ,
ପୂତଗର୍ଭେ ଯାର ଲଭିଣ ଜନମ,
ରୋପିଥିଲେ ଭବେ ବିଜୟନିଶାଣ,
ବନ୍ଦେ ତାଂ ରତ୍ନପ୍ରସବିନୀଂ ।

ଦିବା ନିଶି ଯେହ୍ନେ ଅତି ସ୍ନେହଭରେ,
ପାଳୁଅଛୁ ନିଜ ସନ୍ତାନ ସକଳେ,
ବିପଦେ ଆପଦେ ଆବରି ଅଞ୍ଚଳେ,
ବନ୍ଦେ ତାଂ ଶାନ୍ତିବିଧାୟିନୀଂ ।

ବିଶ୍ୱପତି ପଦ ହୃଦେ ହୃଦେ ଧ୍ୟାୟି,
ଆସ ଭାରତୀୟେ ଏକମେଳ ହୋଇ,
ତ୍ରିଂଶକୋଟି କଣ୍ଠେ ଏକତାନେ ଗାଇ,
ବନ୍ଦେ ସ୍ନେହମୟୀ ଜନନୀଂ ।

ଗାଅରେ ସମୀର କାନନ ଖେଳାଇ,
ଗାଅ ତପ୍ରଧ୍ୱନ ଶୈଳ ଦୋଲାଇ,
ଗାଅ ନଦନଦୀ ସିନ୍ଧୁ ଉଚ୍ଛୁଳାଇ,
ବନ୍ଦେ ତୀର୍ଥମୟୀ ଜନନୀଂ ।

—ଅଜ୍ଞାତ



( ୨୪ )

ଜାଗରେ ଜାଗରେ ଜାଗ ପାହିଲାଣି ରାତି ।
ପୂରବ ଗଗନେ ଦେଖ ଅରୁଣର-ଭାତି ॥

ମାଆ ମାଆ ବୋଲିଣ ଡାକ,
ଉଠିଲେଣି ଜଗତ ଯାକ,
ସରବେ ନୂତନ ଯୁଗେ ଉଠିଲେଣି ମାତି ।

ତୁମ୍ଭେ ଏକା ଅଶକ୍ତା ହୋଇ,
ସୁଖେ ଶେଯେ ରହିଛ ଶୋଇ,
ଧାଇଁ ଆସ ଭାଇ ଭାଇ ହୋଇ ଏକସାଥୀ ।

ଭାଙ୍ଗି ଦିଅ ହସ ଖେଳ,
ଆସିଲାଣି ଚରମ ବେଳ,
ଉଦାସ ନ ହୋଇ ରଖ ନିଜ ଜାତି-ଖ୍ୟାତି ।

କାନ୍ତ କହେ ଚରଣେ ପଡ଼ି,
ଶୁଭବେଳ ଯାଉଛି ଗଡ଼ି,
ଫେଡ଼ିରେ ନୟନ ଗୁଡ଼ି ପଲଙ୍କ ସୁପାତି ।

—ଲକ୍ଷ୍ମୀକାନ୍ତ ମହାପାତ୍ର



( ୨୫ )

ଉଠରେ ଉଠରେ ଓଡ଼ିଆ ସନ୍ତାନେ
ଉଠରେ ରଜନୀ ପାହିଲାଣି,
ଶୁଣରେ ଶୁଣରେ ଭ୍ରମର ଝଙ୍କାର,
କୋକିଳ ମଧୁରେ ଗାଇଲାଣି ।

ଦେଖ ଦେଖ ଶୁଭ ତପନ ଗଗନେ,
ଏ ମହୀ ତମିର ନାଚୁଛି କବଣେ,
ବରଷୁଛି ସୁଧା ମଳୟ ପବନେ,
ଦଶଦଗ ଆଲୋ ଦଶିଲାଣି ।

ଏ ଭାରତ ଦେଶେ ଯେତେ ଭାଇମାନେ,
ଉଠି ପୂଜୁଛନ୍ତି ଜନନୀ ଚରଣେ,
ଲଭୁଛନ୍ତି ବର ସେବା ଆରାଧନେ,
ଶଙ୍ଖରେଳେ ଧରା କମ୍ପିଲାଣି ।

ଆମ୍ଭର ଜନନୀ ଡାକୁଛି ଆଦରେ—
"ଉଠ ଉଠ ବାପଧନ ଉଠ ଆରେ,
ମା କୋଟି ସନ୍ତାନ ଖେଳଟରେ ମା କୋଳେ,
ହୋଇ କର୍ମେ କର୍ମୀ, ଜ୍ଞାନେ ଜ୍ଞାନୀ ।"

ଉଠ ତେବେ ଧର ତେଜ ମନୁ ଭୟ,
ଆକାଶ ଅବନୀ ମନ୍ଥିବା ନଶ୍ଚୟ,
ଏ ବଶ୍ୱସମ୍ପଦେ ଭରିବା ହୃଦୟ,
ଜନନୀ ଆମ୍ଭର ବଶ୍ୱରାଣୀ ।

—ଈଶ୍ୱରଚନ୍ଦ୍ର ହୋତା



(୨୭)

ଭୈରବୀ—କହରୁବା ।

ମୋଟ ଘର
ମୋଟ ଚୂଡ଼ା
ଖାଅ ସାଦରେ,
ହେଲଣି ତ
ଏତେ ସଞ୍ଚ
ପେଟ ଦୁଃଖରେ ।
ଭଲଗଡଗୃହଁ ଯନ୍ଦ
ପିନ୍ଧ ଦେଶୀ ମୋଟା ଖଦ,
ଚହଟ ଚକ୍କଣ ଗୁଣ୍ଡ
ଗୁଣ୍ଡି ସତ୍ୱରେ ।
ଠକଣ ଚଟକେ ଭୋଳ
ହୋଇ ରହୁ ଏତେକାଳ
କ ଦଶା ହେଲାଣି ଥରେ
ହେଜ ମନରେ ।
ଆପଣା ପୁଚ୍ଛକୁ ଜନ୍ଦ
ପର ପୁଚ୍ଛ ଅଙ୍ଗେ ପିନ୍ଧ
ଉଲଙ୍ଗ ହେବାକୁ ଆସି
ହେଲୁ ଶେଷରେ ।
ଖଲାଣିତ ହାତ ରନ୍ଧ,
ବସିଲଣି ପଙ୍ଗୁ ହୋଇ
କେବକୁ ଚେତିବ ନଜ
ଦଶା ଚଭିରେ ।

—ଭିକାରୀଚରଣ ପଟ୍ଟନାୟକ



(୨୭)

ରାଗ କଳ୍ୟାଣଗୌଡ଼ା—ତାଳଝୂଲା ।

( ଶ୍ୟାମ ଶିଖଣ୍ଡ ଚୂଳରେ—ବୃତ୍ତେ )

ଯାଅ ଯାଅ ହେ ଯାଇ,
ଜାତିର ଗର୍ବୋଚ୍ଛ୍ୱାସେ ଗ୍ରଥିତ ଫୁଲଲ୍ଲ ହେ । ୦ ।

ଆଜ କଥାକୁ କାଲି ମଣି ପୁରୁଣା,
ଲକ୍ଷ୍ୟପଥରୁ ତଳେ ନୋହିବ ଉଣା ହେ । ୧ ।

ଯେ ଯାହା ବାଟେ ଯଛେ ଯାଅ ବାହୁଡ଼,
ଜାତି ଦାୟିତ୍ୱ କେହି ନ ଯିବ ଛୁଡ଼ ହେ । ୨ ।

ନାମ କଲେ ବରଷ ସ୍ୱପନ ସର—
ଅବେଶେ ଅଜାଣିତେ ଯିବଟି ସର ହେ । ୩ ।

ମାତୃପଦେ କେ କେତେ ଅଲକ୍ତ-ଲେଖା,
ରହିଛି ଯିବ ଜଣା ହୋଇଲେ ଦେଖା ହେ । ୪ ।

ଜଣେ ଜଣେ ବର୍ଣ୍ଣିବେ ଦେବ ଶୁଣାଇ,—
"ତୁମ୍ଭ ମୁଖକୁ ମାତା ଅଛନ୍ତ ଚାହିଁ" ହେ । ୫ ।

ସାଧକର ସହାୟ ହେଜେ ଈଶ୍ୱର,
ରଖିବ ମତ ସଦା ତାଙ୍କ ପୟର ହେ । ୬ ।

ପିତୃ-ପିତାମହଙ୍କ ଅସ୍ଥି ମିଶ୍ରିତ—
ଏ ଧୂଳ ଘଲେ ମାଟି ହେବ ଅଜିତ ହେ । ୭ ।

—କୃଷ୍ଣମୋହନ ପଟ୍ଟନାୟକ



(୨୮)

ଜାଗ-ଅଗୋ କାଙ୍ଗାଳିନୀ ଜନନି ! ତବ କୁଟୀର-ଦ୍ୱାରେ ଆଜି
ମିଳିତ ତବ ସନ୍ତାନଗଣ !

ଦେଶ ଦେଶାନ୍ତର କରି ଅନୁସନ୍ଧାନ-କୁସୁମ ଚନ୍ଦନ—
ଆଣିଛୁ, ଜନନି, ପୂଜିବୁ ତବ ଚରଣ !

ତବ ମଙ୍ଗଳ-ମନ୍ତ୍ରେ ହିନ୍ଦୁ ମୁସଲମାନ,
ବିସ୍ମୃତ ଗର୍ବ, ଭେଦ ଅଭିମାନ,
ନବ ଆଶା-ପୁଲକିତ ପ୍ରାଣ;

ଦେହ ନବଶିକ୍ଷା-ନବଦୀକ୍ଷା, ଜନନି ! ଫେଇ ମୁଦ୍ରିତ ନୟନ !

କର ଆଶୀଷ ତୋଳି ପୁଣ୍ୟପାଣି—
ଶୁଣାଅ ନନ୍ଦନେତ-ବ-ଅଭୟ-ବାଣୀ,

ଶତ ବିଷାଦ, ଦୈନ୍ୟ ସରମ ମାନି—ଯାଉ ସେ ଘୁଞ୍ଚି,
ଦଗେ, ଦଗେ, ତବ ବିଜୟ-ଶଙ୍ଖ-ଉଦୁଲ୍ଲେ-ବାଜ-ବାଜୁ-
ପୁଲକ-ଉତ୍ସବେ ହେଉ ପରିପୂରିତ-ତବ-ଦୀନ-ଭବନ !

—ଅନୂଦିତ



( ୯ )

ଆସ ହେ ଓଡ଼ିଆ ଭାଇ,
ଯେ ଯାହା ବିଭବ ନେଇ,
ପୂଜିବା ସକଳେ ଜନନୀ ପଦ୍ମରେ ଏ ମହାମିଳନ ଦିନେ ॥

କେତେ ଦୂରଦେଶୁଁ ଆସିଛ ହେ ଆଜ ମାତୃଭୂମି ସେବାପାଇଁ,
କାହାର ଡାକରେ ଉଠି ତରତରେ ସ୍ୱଜନ ବାନ୍ଧବ ନେଇ ।
ଆପଣା ମାଆକୁ ବନ୍ଦ ମାଆ ପୁଣି,
ଏ ଯେ ଜଲ୍ ବଣ ପରବତ ଭୂମି;
ଏ ଦିବ୍ୟ ମୂରତି ମାଆର ହେ ଚିହ୍ନି
ରଖିଥିବା ସଦା ପ୍ରାଣେ ।

ସମୁଦ୍ର ଚିଲିକା ପୁଣ୍ୟ ମହାନଦୀ ଋଷିକୁଲ୍ୟା ବୈତରଣୀ,
ପିଇ ଯାର ନୀର ବଞ୍ଚିଛୁ ମରତେ ସେହି ତ ଏ ମାତୃଭୂମି ।
ଖେଳୁଛ ବୁଲୁଛ ପାଦେ ମାଡ଼ୁଅଛ,
ବଣ ପଦା ବୋଲି ହୃଦରେ ମଣୁଛ,
ମାଟି ବୋଲି ଯାକୁ କରୁଅଛ ତୁଚ୍ଛ;
ମାଆଟି କେ ତାର ଦିନେ ?

ଏ ମାଆର ଆଜ କୋଟିଏ ସନ୍ତାନ ରହିଛନ୍ତି ମାଆର କୋଳେ;
କି ଦୁଃଖ ହେବେ ହେ ମାଆର ପରିଚେଣ, ଥାଇ ଏ ଅବନୀ ତଳେ ?
ଉଠ ଉଠ ଭାଇ ସକଳ ସନ୍ତାନେ,-
ହଳେ ଉଠୁ ଚଷା, ଘରେ ବୋହୂମାନେ,
ଉଠନ୍ତୁ ସରବ ଜ୍ଞାନୀ କର୍ମୀଜନେ,
ମାଆ ଡାକ ଶୁଣି କଣ୍ଠେ ।

ଉଠ ଉଠ ସର୍ବେ ଉଠ ଅହେ ମାତ ମାତୃଭୂମି ସେବା ଲଗି;
ଖଲ ବଣ ନଈ ଡେବେଛି ହେ ଭାଇ ଉଠିବେ ସରବେ ଜାଗି ।

ସିନ୍ଧୁ ଗରଜବ, ନାଚବ ଭୂଧର,
ଆକାଶ ପୃଥିବୀ ହେବେ ଟଳମଳ,
ସୂର୍ଯ୍ୟ ଚନ୍ଦ୍ର ତାରା ଜାଳବେ ଜାଗର,
ମାତୃଭୂମି ପୂଜା ଧାମେ ।

ଭୁଲ ମନୁ ସର୍ବେ ନିଜ ସୁଖଦୁଃଖ, ଲୋଡ଼ ମାତୃଭୂମି ଶିକ୍ଷା;
ପୂରୁବ ଗୌରବ ପୂରୁବ ବିଭବ ଆସିବ ଆବର ଫେରି ।

ଫୁଲେ ଫଳେ ମହୀ ଶୋଭିବ ଢକର,
ଅନ୍ନଜଳେ ଧନ୍ୟ ହେବ ଵଳୀୟାର,
ସରଗୁ ଦେବତା ଢାଳବେ ମଙ୍ଗଳ,
ଓଡ଼ିଆର ପ୍ରାଣେ ପ୍ରାଣେ ।

—ଦୁଲାଲଚନ୍ଦ୍ର ପାଣି



## ୩୦—ଗ୍ରାମ୍ୟ ସୁର ।

ଆସ ଆସ ବେଗେ ଭାଇ ଆସ ହେ ସକଳେ,
ଶୁଣ ଭାଇ କାନ୍ଦେ ଆହା ଜନନୀ ଉତ୍କଳେ ।
ତା କୋଳେ ଜନମି ଅମ୍ଭେ ହେଲୁଁ କି ପାଷାଣ୍ଡ,
ଏ ସୁନାର ଦେଶ କଲୁଁ ହେଲେ ଖଣ୍ଡ ଖଣ୍ଡ ।
ଧିକ ଆମ ବଡ଼ପଣ ଧିକ ଆମ୍ଭ ସୁଖ,
ବଚନରେ ଯିବ କି ହେ ଜନନୀର ଦୁଃଖ ।
ତୁଚ୍ଛ ପିନା କରୁ ରଡ଼ ନମିଷ୍ଟେନ ପାଇଁ,
କାର୍ଯ୍ୟରେ କି କେହ୍ନୁ ଅଛୁ ଦେଖାଇଛ ଭାଇ ।
ଏକତା ଶାନ୍ତ ମନ୍ତ୍ରର ସୁମଧୁର ଗାଇ,
ସରଗୁଁ ମଙ୍ଗଳବାଣି ଆଣିବା ଓହ୍ଲାଇ ।
ଜାଣିବା ସକଳେ ସତେ ସବଳେ ଉଠିବା,
କୋଟି ପ୍ରାଣ କରି ଏକ ସାହସେ ମାତିବା ।
ଦୃଢ଼ବର୍ମ ଭଞ୍ଜେ ଭାଇ ସାଫଲ୍ୟ ନିଶ୍ଚୟ,
ଗାଅ ହେ ସରବେ ଆଜ ଜନନୀର ଜୟ ।

—ଶ୍ରୀମତୀ ହେମମାଳୀ



( ୩୧ )

ଜୟ ଜୟ ଜନ୍ମଭୂମି ଜନନି !
ଯା'ର ସ୍ତନ୍ୟ ସୁଧାମୟ ଶୋଣିତ ଧମନୀ;
କୀର୍ତ୍ତି-ଗୀତଜିତ, ସ୍ତମ୍ଭିତ, ଅବନତ,
ମୁଗ୍ଧ, ଲୁବ୍ଧ ଏହି ସୁବିପୁଳ ଧରଣୀ !

ଉଜ୍ଜ୍ୱଳ-କାଞ୍ଚନ-ହୀରକ-ମୁକ୍ତା-
ମଣିମୟ-ହାର-ବିଭୂଷଣ-ଯୁକ୍ତା;
ଶ୍ୟାମଳ-ଶସ୍ୟ-ପୁଷ୍ପ-ଫଳ-ପୂରିତ,
ସକଳ-ଦେଶ-ଜୟ-ମୁକୁଟମଣି !

ସର୍ବ-ଶୈଳ ଜିତ-ହିମଗିରି ଶୃଙ୍ଗେ,
ମଧୁର-ଗୀତ-ଚିର-ମୁଖରିତ ଭୃଙ୍ଗେ,
ସାହସ-ବିକ୍ରମ-ବୀର୍ଯ୍ୟ ବିମଣ୍ଡିତ,
ସଞ୍ଚିତ— ପରିଣତ-ଜ୍ଞାନଖଣି !

ଜନନି, ଭୁଲି' ତବ କେ ମର-ଜଗତେ ?
କୋଟିକଣ୍ଠେ କହ, "ଜୟ ମା ! ବରଦେ !"
ବିଦୀର୍ଣ୍ଣ ବକ୍ଷରୁ, ତପ୍ତ ରକତ ତୋଳି
ଦିଅ ପଦେ, ତେବେ ଧନ୍ୟ ଗଣି !

—ରଜନୀକାନ୍ତ



( ୩୧ )

ରଞ୍ଜିତ ଅସି ଧାରେ, ଶତ୍ରୁ ରକ୍ତ ପାରେ—
ଲେଖ ହେ ଆଜ ସ୍ୱଜାତ୍ୟ-ବୈଭବ ଜନ୍ମଭୂମି-ସ୍ଥଳେ ।

ନିର୍ମଳ ଆଜ ଧ୍ୱାନ୍ତଗଗନ, ବର୍ଷେ ତପନ ପୁଣ୍ୟ କିରଣ,
ଶତ୍ରୁ ଆଜି ଦଳିତ ଚରଣେ, ଛିନ୍ନ ଏ କରବାଳେ ॥

ଭଗ୍ନ କରନ୍ତୁ ବୈରି-ଗର୍ବ, ବୈରି-ଦମ୍ଭ କରନ୍ତୁ ଖର୍ବ,
ମୃତ୍ୟୁ-ମନ୍ତ୍ର ଲେଖି ଅସିନ୍ତୁ ଶତ୍ରୁର ଶତ-ଭାଲେ ।

ମାତ୍ର ଉଠ ହେ ପୁଣ୍ୟ କରମେ, ବିଶ୍ୱାସ ରଖି ବୀର ଧର୍ମେ;
ପୁଣ୍ୟ କର୍ମେ ବୀରଶକ୍ତି ଦେଖୁ ଏ ଜଗତ ବାରେ ॥

ଇତିହାସ ଯାର ସ୍ୱମ ଲଳିତ ସନ୍ତତି କଲେ ପୂଜା ମହତ,
ଭୂଷିତ କର ସେ ଜନନୀ-ତନୁ କୀର୍ତ୍ତି-କୁସୁମ-ମାଳେ ।

ଜୀବନ ପଣ କର ରେ ଭାଇ, ଦେଶ କରମେ ପ୍ରାଣ ଦେଇ,
ବୀର ଧର୍ମେ ପାଇବ ଫଳ ଜୀବନ ପରପାରେ ।

—ଗୋଦାବରୀଶ ମିଶ୍ର



## ୩୮-ଭୈରବୀ—ଏକତାଳୀ ।

ନାଥ କେଉଁ କୁଞ୍ଜେ ସ୍ୱବ-ବୀଣା-ବଜାଉଛ,
କର୍ଣ୍ଣେ ବାଜେ ସେ ଝଙ୍କାର;
କେଉଁ ସ୍ୱରେ ଜ୍ଞାନ-ସଙ୍ଗୀତ ଗାଉଛ,
ଶୁଣି ଘୁଞ୍ଚେ ଅହଙ୍କାର ।

କେଉଁ ପୂତ ସ୍ଥାନେ ପାତିଛ ଆସନ,
କେଉଁ ରୂପେ ବିଶ୍ୱ କରୁଛ ପ୍ରସନ୍ନ,
କେଉଁ ଦିନ ଆସି ଦେବ ଦରଶନ,
ହେ ହୃଦୟ ଅଲଙ୍କାର । ୧ ।

କେଉଁ ନାମଧରି ସମ୍ବୋଧିବି ଧନ
ପାଶେ ହେବ ପରବେଶ,
କେଉଁ ସୁମନସେ ହାରମ ଗୁନ୍ଥି
ସଜାଇବି ତବ ବେଶ;

କେଉଁ ଦିନ ସତେ ଏ ଯୋଗ ଘଟିବ,
କେଉଁ ଦିନ ମାୟା-ବନ୍ଧନ ଫିଟିବ,
କେଉଁ ଦିନ କୃପା-କଟାକ୍ଷ ତୁଟିବ
ଏ ଅଜ୍ଞାନ-ଅନ୍ଧକାର । ୨ ।

—ଘନଶ୍ୟାମ ମହାନ୍ତି



## ୩୪–ଝିଂଝିଟି ଏକତାଳ ।

ଆସ ଆସ ଭାଇ ବନ୍ଦିବା ମାତାଙ୍କୁ
ମିଳି ସର୍ବେ ଏକ ମନରେ ।
ମାତା ମାତା ବୋଲି ଡାକ ଏକସ୍ୱନେ
ନମିବା ଜନନୀ ପୟରେ । ୧ ।

ଦୂର ଦୂରାନ୍ତର ବିଗ୍ରହ ପାସୋରି
ଭାଇ ଭାଇ ହୃଦେ ହୃଦ ଏକ କରି ।
କୋଟି କୋଟି କଣ୍ଠେ ଏକତାନ ଧରି
ଡାକିବା ମାତାଙ୍କୁ ଉଚ୍ଚରେ । ୨ ।

ଶାସନ ବିଭାଗ ସୀମାକୁ ନ ଗୁହଁ
ଆମ୍ଭେ ଯେବେ ଜଳେ ହେବା ଭାଇ ଭାଇ ।
ଶୁଣି ତାର ହସି ଉଠିବେ ଅନାଇ,
ହସିବେ ଜନନୀ ପ୍ରେମରେ । ୩ ।

ଭ୍ରାତୃପ୍ରେମ ନାଚୁ ବଦନେ ବଦନେ
ଭ୍ରାତୃ ପ୍ରେମ ଖେଳୁ ନୟନେ ନୟନେ । ।
ଉଲ୍ଲାସିତ ହୋଇ ନବୀନ ଜୀବନେ
ନାଚିବା ମାତାଙ୍କ କୋଳରେ । ୪ ।

—ଲକ୍ଷ୍ମୀକାନ୍ତଚରଣ ପଟ୍ଟନାୟକ



( ୩୫ )

ଆସ ହେ ଆସ ହେ ଜନନୀ ଭକ୍ତ
ଆସ ଆଜି ଏକପ୍ରାଣେ,
ଗଙ୍ଗାରୁ ଆଜ ଗୋଦାବରୀ ଯାଏ
ପୂରୁ ନଭ ଏକତାନେ । ୦ ।
ଭ୍ରାତୃ ବନ୍ଧନେ ସର୍ବେ ହୋଇ ଏକ,
ଉଠାଇବା ଆଜ ସୁପ୍ତ ବିବେକ,
ଲୁପ୍ତରତନ ଚାଲ ହେ ଖୋଜିବା
ଜାତିର ମୁକ୍ତି ବିଧାନେ । ୧ ।
ଏହି ଦେଶେ ଅଛି ଶୈଳ ସାଗର,
ହେବା ହେ ସେପରି ଉଚ୍ଚଉଦାର,
ଭୁଞ୍ଜ କରିବା ଅମୃଜୀବନ,
ଜନନୀ ମଙ୍ଗଳ ଧ୍ୟାନେ । ୨ ।
ଧର୍ମ କର୍ମର ଏହି ଲୀଳାସ୍ଥଳୀ
ଲଭିଅଛି ଯୁଗେ ଯୁଗେ ଅମୃବଳ,
ଦେଖିବା ପୁଣି କି ନ ଉଠେ ଉଜଳ
ଜନନୀ ମଧୁର ନାମେ । ୩ ।
ଯାଉ ଆଜ ସବୁ ମୋହନ ଭ୍ରାନ୍ତି,
ଯାଉ ଦୂରେ ଦୈନ୍ୟ ଦୁରିତ କ୍ଲାନ୍ତି,
ସ୍ୱର୍ଗ ଦୁନ୍ଦୁଭି ବାଜୁଛି କ୍ଲାନ୍ତି,
ନେବା ଚାଲ ପ୍ରାଣେ ପ୍ରାଣେ । ୪ ।

—ପଦ୍ମଚରଣ ପଟ୍ଟନାୟକ



( ୩୭ )

କାନଡ଼ା—ଏକତାଲି ।

ଘରେ ଘରେ ଉଠୁ ଜ୍ଞାନର ଝଙ୍କାର,
ଜୟ ବୈଜୟନ୍ତୀ ଉଡ଼ୁ ଏକତାର,
ହୀନ ଏ ଦଶା ଯାଉ ରେ–
( ହେ ଭାଇ ) ହୀନ ଏ ଦଶା ଯାଉ ରେ । ୧ ।

ଘରେ ଘରେ ଜଳୁ ଦୀପ ଜ୍ଞାନଜ୍ୟୋତି,
ଅଜ୍ଞାନ ଜଡ଼ତା ଯାଉ ହେ ଝଟିତି,
ଭାଇ ଭାଇ ମିଳି ଦିଅ କରତାଳି,
ବିଷାଦ ରଜନୀ ପାଉ ରେ–
( ହେ ଭାଇ ) ବିଷାଦ ରଜନୀ ପାଉ ରେ । ୨ ।

ସାମ୍ୟ ଧର୍ମବାଣୀ-ସାର-ପ୍ରସବିନୀ,
ଜ୍ଞାନ ଦୀପିତା ଭୂମି ସନାତନୀ,
ବୀର-ଜନନୀ ପୁଣ୍ୟ ଧରଣୀ,
ମା'ର କ୍ଲେଶ ଯାଉରେ–
( ହେ ଭାଇ ) ମା'ର କ୍ଲେଶ ଯାଉ ରେ । ୩ ।

ଦେଶବାସୀର ଦୁର୍ଗତି ଭାଳି,
ତ୍ୟାଗ ଧରମେ ପ୍ରାଣ ଉଜାଳି,
ତେଜ ନିରାଶା ପ୍ରାଣର ଆଶା,
ଫୁଟି ଦିଶୁ ଦାଉ ଦାଉ ରେ–
( ହେ ଭାଇ ) ଫୁଟି ଦିଶୁ ଦାଉ ଦାଉ ରେ । ୪ ।

ଔର-ଯଯାତି-ବଂଶ ଜନମ,
ନୁହଁ ଭାଇ ପଶୁ, ନ କର ହେ ଭ୍ରମ,
ସ୍ୱାର୍ଥ ପଦେ ବଳି ଦିଅ ଆତ୍ମବଳୀ
ଜାତି-ଜଡ଼ତା ଯାଉ ରେ–
( ହେ ଭାଇ ) ଜାତି-ଜଡ଼ତା ଯାଉ ରେ । ୫ ।

–ନୀଳକଣ୍ଠ ଦାଶ



୬୭--ଗର୍ଜି ଉଠୁଛି ତୂର୍ଯ୍ୟନାଦ ଉଡୁଛି ବିଜୟ ବୈଜ,
ଆର୍ଯ୍ୟବାହିନୀ ଆସୁଛି ଫେରି ବର୍ଜି ସମରକ୍ଷେତ୍ର ।

( କୋରସ )

ବଜାଅ ବଜାଅ ବିଜୟ ଶଙ୍ଖ ଗାଅ ଭାରତର ଜୟ,
ଚନ୍ଦ୍ର ସୂର୍ଯ୍ୟ କମ୍ପିତ ହେଉ ଗର୍ଜୁ ଅବନୀମୟ ॥
କ୍ଷିପ୍ର ଅଗଣିତ ଅସ୍ତ୍ର ଆଘାତ ସହୁଛି ମୁକ୍ତ ବକ୍ଷେ,
ରହୁଛି ଅଟଳ ଆପଣା ଧର୍ମେ ଅଚଳ ରହୁଛି ଲକ୍ଷେ ॥
ବହୁଛି ଝଞ୍ଜା ମସ୍ତକେ ତାର ହୋଇଛି ଅଗ୍ନି ବୃଷ୍ଟି,
ସତ୍ୟ ପଥରୁ ନିମିଷକ ପାଇଁ ଫେରାଇ ନାହିଁ ସେ ଦୃଷ୍ଟି ॥
ଜନ୍ମଭୂମି ମୁକୁତି ଯଜ୍ଞେ ଅର୍ପି ହୃଦୟ ରକ୍ତ,
ଗୌରବ ଟୀକା ଘେନୁଛି ଭାଲେ ସ୍ୱଦେଶ କରିଣ ମୁକ୍ତ ।
ବିଜୟ-ଲକ୍ଷ୍ମୀ ଆଣିଛି ଛଡ଼ାଇ ଶତ୍ରୁ-ସାଗର ମନ୍ଥି;
ବଜ୍ର ମୁଷ୍ଟି ଖଡ୍ଗ ପ୍ରହାର ଛିନ୍ନ କରିଛି ଗ୍ରନ୍ଥି ॥
ବଜାଅ ବଜାଅ ମଙ୍ଗଳ ତୂରୀ ବଜାଅରେ ରଣ ଡଙ୍କା,
ପୂର୍ଣ୍ଣ ହୋଇଛି ଜୀବନ ଯଜ୍ଞ, ଚୂର୍ଣ୍ଣ ହୋଇଛି ଶଙ୍କା ॥



-ଲକ୍ଷ୍ମୀକାନ୍ତ

୬୮--ଯେ ଦିନ ସ୍ୱାଧୀନ ହେବ ଏ ଭାରତ,
ସେ ଦିନ ପଢ଼ିବୁ ଗୀତା ଭାଗବତ ।
କୋରାଣ ବା ରାମାୟଣ ଉଲ୍ଲାସରେ,
କରିବୁଁ ଅବୃତ୍ତି ସ୍ୱାଧୀନ ସ୍ୱରରେ ।
ଆମେ ଭାରତର ତେତିଶ କୋଟିରେ,
ଜନମ ଆମର ଏକା ଏ ମାଟିରେ ।
ଆଜ ଏକ ସଙ୍ଗେ ହିନ୍ଦୁ ମୁସଲମାନ,
ଶିଖ ପାର୍ଶି ଜୈନ ଇହୁଦ ଖ୍ରୀଷ୍ଟାନ ।
ଆର୍ଯ୍ୟ ବା ଅନାର୍ଯ୍ୟ ନାହିଁ ଭେଦଭାବ,
ଏକା ଲକ୍ଷ୍ୟ ଆମ ସ୍ୱରାଜ୍ୟର ଲାଭ ।



—ଅଜ୍ଞାତ

( ୩୯ )

ମିଶ୍ର ଝିଂଝିଟ୍ ।

ଆଜ ସାଗରେ ଭୂଧରେ ପ୍ରାନ୍ତରେ ଅମ୍ବରେ
ଶୁଭୁ ଉତ୍କଳର ଜୟ-ଗୀତି । ୦ ।

ଯାଇଛୁ ଅତୀତ ହଜ ନାହିଁ ସୀମା,
ଦବ ନାହିଁ ତାନ ହେଲେହେଁ ପ୍ରାଚୀନ।
ନବ ଜାଗରଣେ ନବ ଗୁଞ୍ଜରଣେ
ଉଠୁ ସେ ତନ୍ତୁରେ ନବ ସ୍ଫୀତି । ୧ ।

ଡାକ 'ହିମାଚଳ' କହେ 'ସୀମାଚଳେ'
"କି ସଙ୍ଗୀତ ସ୍ଫୁଟେ 'ଚିଲ୍କା' କଲ୍ଲୋଳେ,
"ମୋ' ହିମ ଗଳଇ 'ତୋ' ସୀମା ଟଳଇ
"ଦେଖି ଉତ୍କଳର ପୁଣ୍ୟ ପ୍ରୀତି" । ୨ ।

ଶରତ ସଜାଉ ସୁରୂପକ୍ୱଶାଳୀ,
ବସନ୍ତ ବଜାଉ ଦୋଳଘଣ୍ଟାବଳୀ,
ଶୁଭ୍ରଶୀର୍ଷ ଯେନ୍ତ ଉଦ୍ଦ ଶଶୀ ବେଦନ,
ଉଠନ୍ତୁ ବୁଡନ୍ତୁ ନିତନିତି । ୩ ।

ଶିଶୁ ଦେଉ ତା ର ଉଷାରୁଣ ବିଭା,
ଦେଉ ଯୁବାଜନ ମଧ୍ୟାହ୍ନ-ପ୍ରତିଭା,
ଜ୍ଞାନରଶ୍ମି-ଶେଷ ଦେଉ-ପକ୍ୱ-କେଶ
ଭାଙ୍ଗୁ ସାଧନାର ଭ୍ରାନ୍ତ-ସ୍ମୃତି । ୪ ।

ଅଛୁ 'ହୀରାଖଣ୍ଡ' ଅଛୁ 'ସ୍ୱର୍ଣ୍ଣରେଖା'
ମନ୍ଦିର ମନ୍ଦରେ ଇତିହାସ ଲେଖା
କୈବଲ୍ୟ-ବିଧାନ ଏବେହେଁ ଶ୍ରୀଧାମେ
ଅଛୁ ପ୍ରଗୃହୀତ ସାମ୍ୟ ନୀତି । ୫ ।

-କୃଷ୍ଣମୋହନ ପଟ୍ଟନାୟକ



( ୪୦ )

ଭୈରବୀ — ଏକତାଳି

ଆସ ଆସ ଭାଇ ସିଂହ ସମ ହୋଇ,
ଲଭି ନବ ତେଜ ଉଠି ଆସ ଧାଇଁ
ଜାଗ ଜାଗ ବେଗେ, ଉଠ ହେ ସବେଗ,
ଆସୁଅଛି ଦେଖ ଅମାନିଶା ପାହି । ୧ ।

ସିଂହର ସନ୍ତାନ ସିଂହବଳେ ବଳି,
ଶୋଇଥିବ କେହେ ହୋଇ ହୀନବଳୀ ?
ସିଂହଠାଣି ତବ ନେଲା କେ କି ହେଳେ ?
ସ୍ମରି ପୂର୍ବଯଶ, ଜାଗି ଉଠ ଭାଇ । ୨ ।

ଘୋଷି ପିତୃପିତାମହ ଯଶ କୀର୍ତ୍ତି,
ଜାଗନ୍ତେ ଉତ୍କଳୀ ପୁଲକିତ ଚିତ୍ତ,
ଜାତି-ଯଜ୍ଞ କର୍ମେ ଯାଅ ବେଗେ ମାତି,
ଶୋଇ ରହିବାକୁ ବେଳ ଆଉ ନାହିଁ । ୩ ।

ଜାଗିଛି ଭାରତ ଏତେକାଳ ପରେ,
ଦିଶାଏ ଅପଣା ଶକତି ତହିଁରେ,
ଯୁବକ ଉତ୍କଳ ଉଠ ନବ ବଳେ,
କର୍ମକ୍ଷେତ୍ରେ ପଶ ସ୍ୱାର୍ଥ ଏଡ଼ି ଦେଇ । ୪ ।

ଗଲେ ଯାଉ ପ୍ରାଣ, ଥାଉ ଜାତିତ୍ରାଣ,
ଦାଉ ଦାଉ ଜଳୁ ଜାତୀୟ ଜୀବନ;
ତେଜି ରାଗ ଦ୍ୱେଷ ହିଂସା ଖଳପଣ,
ଆଗଭର ହୁଅ ବେଗ ବେଗ ହୋଇ । ୫ ।

ଦେଖ ସବୁ ଜାତି ଏ ବଟେଣ୍ଟ ଜାଗ୍ରତ,
ଉତ୍କଳ କିମ୍ପାଇଁ ଥିବ ଜୀବନ୍ମୃତ ?
ଭାରତ ଉନ୍ନତି ଉତ୍କଳର ହିତ,
ଭାରତର ସଙ୍ଗ ଛାଡ଼ିବଅ ନାହିଁ । ୬ ।

ପତନ ଉତ୍ଥାନ ସ୍ଥିତି ଚିରନ୍ତନ,
ନିର୍ଦ୍ଧନ ବୋଲି ହେ ନିଜକୁ ନ ମଣ ।
ଭାଇ ଭାଇ ମିଳି ରଖ ଜାତି ପ୍ରାଣ,
ଅଚିରେ ଏ ଦୁଃଖ ଯିବନ୍ତି ପଳାଇ । ୭ ।

ମାନବ ଯା କରେ, ତାହା କରି ପାର,
ଦମ୍ଭ ଥିଲେ ମହାସ୍ତମ୍ଭ ଟାଳି ପାର;
ନ୍ୟାୟ ସତ୍ୟପଥେ ରହି ହେ ନିଡର,
ପ୍ରଭୁ ଭଗବାନ ସାହା ହେବେ ସାର । ୮ ।

—ଜଗବନ୍ଧୁ ସିଂହ



( ୪୧ )

କିଏ ହସି ହସି ଦେବ ପ୍ରାଣ ଭାଇ
ବଣ୍ଟ ଡାକୁଛି କାହାକୁ,
କିଏ କାନ୍ଦି କାନ୍ଦି ଗାଇବ ଗୀତଟି
ଅଶ୍ରୁସାର ସବୁ ଦେବାକୁ ?
କିଏ ବନ୍ଧୁ ନେବ ଛିନ୍ନ ପତାକା
ଉଠାଇବ ବୀର କେତନ,
ଆସ ଅଗ୍ରେ ଆସ ତରୁଣ ତପସ୍ୱୀ
କୋଟିକଣ୍ଠ ଡାକେ ସଘନ ॥

— ଅଜ୍ଞାତ



## ୪୨—ଆଠତାଳ ।

ସୁନ୍ଦର ମା ମୋର ଭାରତ ଜନନୀ ଗୋ,
ତୋ ପରି କେହି ମା ନାହିଁ ଏ ଅବନୀ ଗୋ;
ତୋ ସମ୍ପଦ ଶୋଭା ନୟନ-ମନ-ଲୋଭା
ତୋ ଗୁଣ କୀର୍ତ୍ତନ ଲେଖନୀ ଗୋ । ୧ ।

କାନନ ପ୍ରାନ୍ତର ଭୂଧର କନ୍ଦର
ଶ୍ୟାମଳ ଉପବନ ସରିତ ସାଗର
ଗଗନ-ନୀଲିମା ଅନନ୍ତ ସୁଷମା
ସୂର୍ଯ୍ୟଚନ୍ଦ୍ରତପନ ତାରକା-ଶୋଭିନୀ ଗୋ । ୨ ।

ଅଖିଳ-ଜଗତ-ସାର ବେଦ-ବିଦ୍ୟା ଅପାର
ଶାନ୍ତି-ସୁଖ ଆଧାର ଧରମ-ତରଣୀ ଗୋ । ୩ ।

କୀର୍ତ୍ତି-କଳା-କୁଶଳା ପୁଣ୍ୟ ତୀର୍ଥ-ସ୍ଥଳା—
ଧାମ, ପ୍ରେମ ପୂତ-ସଲିଳ-ତଟିନୀ ଗୋ ॥

ବୀର ପରଶୁରାମ— ବ୍ରହ୍ମର୍ଷି ଶ୍ରେଷ୍ଠ—
ପ୍ରତାପ-ପୃଥ୍ୱୀରାଜ-ବୀର ଜନନୀ ଗୋ ॥

ରାମରାଜ ସହ ତ୍ୟାଗୀ ଅନୁଜ ସହ,
ଦାନୀ କର୍ଣ୍ଣବୀର ପାଣ୍ଡବମାତନୀ ଗୋ ॥

—ବାଞ୍ଛାନିଧି ମହାନ୍ତି



# ବଙ୍ଗଳା ଗୀତ ।

( ୪୩ )

ଊର୍ଦ୍ଧ୍ୱ ଗଗନେ ବାଜେ ମାଦଲ		ନିମ୍ନେ ଉତଲା ଧରଣୀତଲ
ଅରୁଣ ପ୍ରାତେର ତରୁଣ ଦଲ ! ଚଲରେ ଚଲ୍‌ରେ ଚଲ୍ ।

ଉଷାର ଦୁଆରେ ହାନି ଆଘାତ,	ଆମରା ଆନିବ ରାଙ୍ଗା ପ୍ରଭାତ;
ଅମରା ଟୁଟାବ ତିମିର ରାତ, ବାଧାର ବିନ୍ଧ୍ୟାଚଲ୍ ।

ଊର୍ଦ୍ଧ୍ୱେ ଆଦେଶ ହାନିଛେ ବାଜ୍, ସହିଦିର ଦେର୍ ସେନାରା ସା'ଜ୍,
ଦିଶେ ଦିଶେ ଚଲେ କୋଚ୍ କାଓ୍ୟାଜ, ଖୋଲ୍‌ରେ ନିଦମହଲ୍ ।

ଚଲ୍‌ରେ ନଓଜଓ୍ୱାନ୍,		ଶୋନ୍‌ରେ ପାତିଆ କାନ୍,
ମୃତ୍ୟୁ-ତୋରନ୍ ଦୁଆରେ ଦୁଆରେ, ଜୀବନେର୍ ଆହ୍ୱାନ୍ ।
ଭାଙ୍ଗରେ ଭାଙ୍ଗ ଆଗଲ୍, ଚଲରେ ଚଲ୍‌ରେ ଚଲ୍ ।
ନବ ଜୀବନେର ଗାହିଆ ଗାନ୍,	ସଜୀବ କରିବ ମହା ଶ୍ମଶାନ୍
ଆମରା ଦାନିବ ନୂତନ ପ୍ରାନ୍, ବାହୁତେ ନବୀନ ବଲ୍ ।

କବେ ସେ ଖେଆଲି ବାଦଶାହୀ, ସେଇସେ ଅତୀତ ଆଜୋ ଗୁହି,
ଯାସ୍ ମୁଷାଫୀର ଗାନ ଗାହୀ, ଫେଲସ୍ ଅଶ୍ରୁଜଲ୍ ।

ଜାଗିଲି ତାରା ସକଲ୍,		ନେଚେଗେ ଉଠ ହୀନ-ବଲ୍,
ଆମରା ଗଡ଼ିବ ନୂତନ କରିଆ, ଧୂଲାୟେ ତାଜ୍‌ମହଲ୍ ।

—କାଜି ନଜରୁଲ ହକ୍



( ୪୪ )

ଭୈରବୀ—ଏକତାଲା ।

ଅୟି ଭୁବନ-ମନ-ମୋହିନି !
ଅୟି ନିର୍ମ୍ମଳ-ସୂର୍ଯ୍ୟ-କରୋଜ୍ଜ୍ୱଳ-ଧରଣି !
ଜନକ-ଜନନୀ-ଜନନି ! ( ମା !— )

ନୀଳ-ସିନ୍ଧୁ-ଜଳ ଧୌତ-ଚରଣତଳ,
ଅନିଳ-ବିକମ୍ପିତ ଶ୍ୟାମଳ-ଅଞ୍ଚଳ,
ଅମ୍ବର-ଚୁମ୍ବିତ— ଭାଲ-ହିମାଚଳ,
ଶୁଭ୍ର-ତୁଷାର-କିରୀଟିନି ! ( ମା !— )

ପ୍ରଥମ ପ୍ରଭାତ ଉଦୟ ତବ ଗଗନେ,
ପ୍ରଥମ ସାମ-ରବ ତବ ତପୋବନେ,
ପ୍ରଥମ ପ୍ରଚାରିତ ତବ ବନ-ଭବନେ,
ଜ୍ଞାନ, ଧର୍ମ୍ମ କେତେ ପୁଣ୍ୟ-କାହାଣୀ; ( ମା !— )

ଚିର କଲ୍ୟାଣମୟୀ ତୁହି ଧନ୍ୟ,
ଦେଶେ ବିଦେଶେ ବିତରୁଛୁ ଅନ୍ନ,
ଜାହ୍ନବୀ-ଯମୁନା— ବିଗଳିତ-କରୁଣା
ପୁଣ୍ୟ-ପୀୟୂଷ-ସ୍ତନ୍ୟ-ବାହିନି ! ( ମା !— )

—ରବୀନ୍ଦ୍ରନାଥ

( ୪୫ )

ଦେଶ ଦେଶ ନନ୍ଦିତ କରି ମନ୍ଦ୍ରିତ ତବ ଭେରୀ,
ଆସିଲ ଯତ ବୀରବୃନ୍ଦ ଆସନ ତବ ଘେରି ।
ଦିନ ଆଗତ ଅଇ, ଭାରତ ତବୁ କଇ,
ସେ କି ରହିଲ ସୁପ୍ତ ଆଜି ସବଜନ ପଶ୍ଚାତେ,
ଲଉକ ବିଶ୍ୱ କର୍ମଭାର ମିଳି ସବାର ସାଥେ ।
ପ୍ରେରଣ କର ଭୈରବ ତବ ଦୁର୍ଜ୍ଜୟ ଆହ୍ୱାନ ହେ
ଜାଗ୍ରତ ଭଗବାନ ହେ ଜାଗ୍ରତ ଭଗବାନ । ୧ ।

ବିଘ୍ନ ବିପଦ ଦୁଃଖ ଦହନ ତୁଚ୍ଛ କରିଲ ଯାରା,
ମୃତ୍ୟୁଗହନ ପାର ହଇଲ ଟୁଟିଲ ମୋହ କାରା ।
ଦିନ ଆଗତ ଅଇ, ଭାରତ ତବୁ କଇ,
ନିଶ୍ଚଲ ନିର୍ବୀର୍ଯ୍ୟ ବାହୁ କର୍ମ କୀର୍ତ୍ତିହୀନେ,
ବ୍ୟର୍ଥ ଶକ୍ତି ନିରାନନ୍ଦ ଜୀବନ ଧନ ଦୀନେ ।
ପ୍ରାଣ ଦାଓ ପ୍ରାଣ ଦାଓ ଦାଓ ଦାଓ ପ୍ରାଣ ହେ,
ଜାଗ୍ରତ ଭଗବାନ ହେ ଜାଗ୍ରତ ଭଗବାନ । ୨ ।

ନୂତନ ଯୁଗ ସୂର୍ଯ୍ୟ ଉଠିଲ ଛୁଟିଲ ତିମିର ରାତି,
ତବ ମନ୍ଦିର ଅଙ୍ଗନଭରି ମିଲିଲ ସକଲ ଯାତ୍ରୀ ।
ଦିନ ଆଗତ ଅଇ, ଭାରତ ତବୁ କଇ
ଗତ-ଗୌରବ ଚ୍ୟୁତ-ଆସନ ନତ-ମସ୍ତକ ଲାଜେ,
ଗ୍ଲାନି ତାର ମୋଚନ କର ନର-ସମାଜ ମାଝେ ।
ସ୍ଥାନ ଦାଓ ସ୍ଥାନ ଦାଓ ଦାଓ ଦାଓ ସ୍ଥାନ ହେ,
ଜାଗ୍ରତ ଭଗବାନ ହେ ଜାଗ୍ରତ ଭଗବାନ । ୩ ।

ଜନଗଣ ପଥ ତବ ଜୟ ରଥ ଚକ୍ର ମୁଖର ଆଜି
ସ୍ପନ୍ଦିତ କରି ଦିଗ ଦିଗନ୍ତ ଉଠିଲେ ଶଙ୍ଖ ବାଜି ।

ଧନ ଆଗତ ଅଇ,   ଭାରତ ତବୁ କଇ,
ଦୈନ୍ୟ ଜୀର୍ଣ୍ଣ ବକ୍ଷ ତାର ମଳିନ ଶୀର୍ଣ୍ଣ ଆଶା,
ତ୍ରାସ ରୁଦ୍ଧ କଣ୍ଠ ତାର ନାହିଁ ନାହିଁ ଭାଷା ।
କୋଟି ମୌନ କଣ୍ଠ ପୂର୍ଣ୍ଣ ବାଣୀ କର ଦାନ ହେ,
ଜାଗ୍ରତ ଭଗବାନ ହେ ଜାଗ୍ରତ ଭଗବାନ । ୪ ।
ଯା'ର ତବ ଶକ୍ତି ଲଭିଲ ନିଜ ଅନ୍ତର ମାଝେ,
ବର୍ଜିଲ ଭୟ ଅର୍ଜିଲ ଜୟ ସାର୍ଥକ ହେଲ କାଜେ ।
ଧନ ଆଗତ ଅଇ,   ଭାରତ ତବୁ କଇ,
ଆତ୍ମ ଅବିଶ୍ୱାସ ତାର ନାଶ କଠିନାଘାତେ,
ପୁଞ୍ଜିତ ଅବସାଦ ଭାର ହାନ ଅଶନି ପାତେ ।
ଛାୟା ଭୟ ଚକିତ ମୂଢ଼ କରହ ପରିତ୍ରାଣ ହେ,
ଜାଗ୍ରତ ଭଗବାନ ହେ ଜାଗ୍ରତ ଭଗବାନ । ୪ ।

—ରବୀନ୍ଦ୍ରନାଥ

———※———

( ୪୭ )

ଯେ ଦିନ ସୁନୀଲ ଜଳଧି ହଇତେ ଉଠିଲ ଜନନୀ ଭାରତବର୍ଷ
ଉଠିଲ ବିଶ୍ୱେ ସେ କି କଲରବ ସେ କି ମା ଭକ୍ତି, ସେ କି ମା ହର୍ଷ ॥
ସେ ଦିନ ତୋମାର ପ୍ରଭାବେ ଧରାୟ ପ୍ରଭାତ ହଇଲ ଗମ୍ଭୀର ରାତ୍ରି
ବନ୍ଦିଲ ସବେ 'ଜୟ ମା ଜନନୀ'-ଜଗତତାରିଣୀ ଜଗଦ୍ଧାତ୍ରୀ ॥

( କୋରସ )

ଧନ୍ୟ ହଇଲ ଧରଣୀ ତୋମାର ଚରଣକମଲ କରିୟା ସ୍ପର୍ଶ ।
ଗାଇଲ 'ଜୟ ମା ଜଗନ୍ମୋହିନୀ' ଜଗଜ୍ଜନନୀ ଭାରତବର୍ଷ ॥
ସଦ୍ୟସ୍ନାତ-ଶିକ୍ତ ବସନ ଚିକୁର ସିନ୍ଧୁ ଶୀକର ଲିପ୍ତ,
ଲଲାଟେ ଗରିମା ବିମଳ ହାସ୍ୟେ ଅମଳ କମଳ ଆନନ ଦୀପ୍ତ ।
ଉପରେ ଗଗନ୍ ଘେରିୟା ନୃତ୍ୟ କରିଛେ ତପନ ତାରକାଚନ୍ଦ୍ର,
ମନ୍ତ୍ରମୁଗ୍ଧ ଚରଣେ ଫେନିଲ ଜଳଧି ଗରଜେ ଜଳଦ ମନ୍ଦ୍ର ॥

( କୋରସ )

ଧନ୍ୟ ହଇଲ … … … … … ଭାରତବର୍ଷ ॥

ଶୀର୍ଷେ ଶୁଭ୍ର ତୁଷାର-କିରୀଟୀ ସାଗର ଊର୍ମି ଘେରିୟା ଜଂଘା
ବକ୍ଷେ ଦୁଲିଛେ ମୁକ୍ତା ଉପହାର ପଞ୍ଚସିନ୍ଧୁ ଯମୁନା ଗଙ୍ଗା ।
ଚଖନ୍ ମା ତୁମି ଭୀଷଣ ଦୀପ୍ତ ତପ୍ତମରୁର ଉଦୟ ହୃଶ୍ୟେ
ହାସିଆ କଖନ୍ ଶ୍ୟାମଲ ଶସ୍ୟେ ଛଡ଼ିୟେ ପଡ଼ିଛ ନିଖିଳବିଶ୍ବେ ॥

( କୋରସ )

ଧନ୍ୟ ହଇଲ … … … … ଭାରତବର୍ଷ ॥

ଊପରେ ପବନ ପ୍ରବଲ ସ୍ୱନନେ ଶୂନ୍ୟେ ଗରଜି ଅବିଶ୍ରାନ୍ତ,
ଲୁଟାୟେ ପଡ଼ିଛେ ପିକ କଲରବେ ଚୁମ୍ବି ତୋମାର ଚରଣ ପ୍ରାନ୍ତ ।
ଊପରେ ଜଲଦ ହାନିୟା ବଜ୍ର କରିୟା ପ୍ରଲୟେ ସଲିଲ ବୃଷ୍ଟି
ଚରଣେ ତୋମାର କୁଞ୍ଜକାନନ କୁସୁମଗନ୍ଧ କରିଛେ ସୃଷ୍ଟି ॥

( କୋରସ )

ଧନ୍ୟ ହଇଲ … … … … ଭାରତବର୍ଷ ॥

ଜନନୀ ତୋମାର ବକ୍ଷେ ଶାନ୍ତି କଂଠେ ତୋମାର୍ ଅଭୟ ଉକ୍ତି,
ହସ୍ତେ ତୋମାର ବିତର ଅନ୍ନ ଚରଣେ ତୋମାର ବିତର ମୁକ୍ତି ।
ଜନନୀ ତୋମାର୍ ସନ୍ତାନତରେ କତନା ବେଦନା କତନା ହର୍ଷ
ଜଗତପାଲିନୀ ଜଗତତାରିଣୀ ଜଗଜ୍ଜନନୀ ଭାରତବର୍ଷ ॥

( କୋରସ )

ଧନ୍ୟ ହଇଲ … … … … … ଭାରତବର୍ଷ ॥

—ଦ୍ୱିଜେନ୍ଦ୍ରଲାଲ ରାୟ



( ୪୭ )

ଧନ ଧାନ୍ୟେ ପୁଷ୍ପେ ଭରା, ଆମାଦେର ଏଇ ବସୁନ୍ଧରା
ତାହାର ମାଝେ ଅଛେ ଦେଶେକ୍ ସକଲ୍ ଦେଶେର ସେରା
ଓସେ ସ୍ୱପ୍ନ ଦିୟେ ତୈରୀ ସେ ଯେ ସ୍ମୃତି ଦିୟେ ଘେରା— ।
ଏମନ୍ ଦେଶ୍‌ଟି କୋଥାଓ ଖୁଁଜେ ପାବେ ନାକ ତୁମି
ସକଲ୍ ଦେଶର୍ ରାଣୀ ସେ ଯେ ଆମାର ଜନ୍ମଭୂମି—
ସେ ଯେ ଆମାର ଜନ୍ମଭୂମି, ସେ ଯେ ଆମାର ଜନ୍ମଭୂମି ॥
ଚନ୍ଦ୍ର, ସୂର୍ଯ୍ୟ,ଗ୍ରହ, ତାରା, କୋଥାଓ ଉଜ୍ଜ୍ୱଲ୍ ଏମନ୍ ଧାରା
କୋଥାଓ ଏମନ୍ ଖେଲେ ତଡ଼ିତ୍ ଏମନ୍ କାଲ୍ଲ ମେଘେ
ତାରା ପାଖୀର ଡାକେ ଘୁମିୟେ ପଡ଼େ ପାଖୀର ଡାକେ ଜାଗେ—
ଏମନ୍ ଦେଶଟି ... ... ... ସେ ଯେ ଆମାର ଜନ୍ମଭୂମି ।
ଏମନ୍ ସ୍ନିଗ୍ଧ ନଦୀ କାହାର୍ କୋଥାଓ ଏମନ୍ ଧୂମ୍ର ପାହାଡ଼
କୋଥାଓ ଏମନ୍ ହରିତ୍ କ୍ଷେତ୍ର ଆକାଶତଲେ ମିଶେ
ଏମନ୍,ଧାନେର୍ ଉପର୍ ଢେଉଖେଲେ ଯାୟବାତାସ୍ କାହାର୍,ଦେଶେ
ଏମନ୍ ଦେଶଟି ... ... ... ସେ ଯେ ଆମାର ଜନ୍ମଭୂମି ॥
ପୁଷ୍ପେ ପୁଷ୍ପେ ଭରା ଶାଖୀ କୁଞ୍ଜେ କୁଞ୍ଜେ ଗାୟେ ପାଖୀ
ଗୁଞ୍ଜରିଆ ଆସେ ଅଲି ପୁଞ୍ଜେ ପୁଞ୍ଜେ ଧେୟେ
ତାରା, ଫୁଲେର୍ ଉପର୍ ଘୁମିୟେ ପଡ଼େ ଫୁଲେର୍ ମଧୁ ଖେୟେ—
ଏମନ୍ ଦେଶଟି ... ... ... ସେ ଯେ ଆମାର ଜନ୍ମଭୂମି ॥
ମାୟେର୍ ହୃୟେର୍ ଏତ ସ୍ନେହ କୋଥାଓ ଗେଲେ ପାବେ କେହ
ଓମା, ତୋମାର୍ ଚରନ୍ ଦୁଟି ବକ୍ଷେ ଆମାର୍ ଧରି
ଆମାର, ଏଇ ଦେଶେତେ ଜନ୍ମ ଯେନ ଏଇ ଦେଶେତେ ମରି—
ଏମନ ଦେଶ୍‌ଟି ... ... ... ସେ ଯେ ଆମାର ଜନ୍ମଭୂମି ॥

—ଦ୍ୱିଜେନ୍ଦ୍ରଲାଲ ରାୟ

ସମାପ୍ତ ।

Printed by H. K. Das, Chandrodaya Press, Cuttack.

# ସଙ୍ଗୀତ ନୂଆ ପ୍ରେମ-ତରଙ୍ଗ

ମୂଲ୍ୟ ଚଉଦ ପଇସା ମାତ୍ର ।

# ସଙ୍ଗୀତ ନୂଆ କଣ୍ଠହାର

ମୂଲ୍ୟ ଚଉଦ ପଇସା ମାତ୍ର ।

# ସଙ୍ଗୀତ ସୁନାହାର

ମୂଲ୍ୟ ଚଉଦ ପଇସା ମାତ୍ର ।

# ସଙ୍ଗୀତ ବନଫୁଲହାର

ମୂଲ୍ୟ ଚଉଦ ପଇସା ମାତ୍ର ।

---

ପ୍ରାପ୍ତିସ୍ଥାନ :—

ଚନ୍ଦ୍ରୋଦୟ ପ୍ରେସ ଓ ଚନ୍ଦ୍ରୋଦୟ ପୁସ୍ତକାଳୟ,
ବାଲୁବଜାର, ପୋଃ ଅଃ ଗୃଦ୍ଧମାଚଉକ,
କଟକ ।